NATION ON THE MOVE

# Towards reduction of inequality

The income-tax exemption limit has been raised to Rs. 8,000 (it was Rs. 6,000); this brings relief to 7 lakh tax-payers. Side by side, new assessees have been discovered; last year 1.33 lakh persons were served notice for payment of income-tax.

Today there is ample encouragement for personal saving (savings up to Rs. 4,000 a year are totally tax-free) and there is punishment for those who seek to cheat the State.



**IRON WILL AND HARD WORK SHALL SUSTAIN US**

*For a free booklet on*
*TAXES FOR DEVELOPMENT*
*please write to:*
*Distribution Manager*
*D.A.V.P. B Block, Kasturba*
*Gandhi Marg, New Delhi-110001*

davp 75/484






















## ରସାଳ ମଧୁର ମଜାଦାର

# ପାର୍ଲେ ପପିନସ

ଫଳର ସ୍ୱାଦଭରା ମିଠାଗୋଲି

**୬ ଫଳର ସ୍ୱାଦରେ ଭରା**
**ରାସ୍ପବେରୀ, ସପୁରୀ**
**କାଗେଜି ଲେମ୍ବୁ,**
**କମଳା ଲେମ୍ବୁ ଓ ମୌସମ୍ବୀ**




everest/393/PP-or

# ଏଇ ଦେଖନ୍ତୁ ମୋ ଡ୍ୟାଡି କେମିତି ଦେଖାଯାନ୍ତି



ମୋ
ରିପୋର୍ଟ
କାର୍ଡ଼କୁ
ଦେଖିଲାବେଳେ



ଯେତେବେଳେ
ସେ
ଖୁସି ଥାନ୍ତି



ମୁଁ
ଯେତେବେଳେ
ଝରକା
କାଚ ଭାଙ୍ଗିଦିଏ



ମୁହଁରେ
ମୁଖା ଲଗେଇ
ମୁଁ
ଯେତେବେଳେ
ତାଙ୍କୁ ଡରାଏ

କି ମଜା ! ତମର ଡ୍ୟାଡଙ୍କୁ ଆଙ୍କିବାକୁ ଚେଷ୍ଟା କରନ୍ତୁ—ଆଉ ଯାହା କିଛି ଭଲ ଲଗୁଛି ତାହା ମଧ୍ୟ ଆଙ୍କନ୍ତୁ—କ୍ୟାମେଲ ଓ୍ବାଟର କଲରରେ ।

## କ୍ୟାମେଲ

**ଓ୍ବାଟର କଲର୍ସ ଓ ପୋଷ୍ଟର କଲର୍ସ**







**କ୍ୟାମଲିନ ପ୍ରାଃ ଲିଃ**
ଆର୍ଟ ମ୍ୟାଟେରିଅଲ ଡିଭିଜନ
ଜେ. ବି. ନଗର,
ବମ୍ବେ ୪୦୦ ୦୫୯



କ୍ୟାମେଲ ଓ୍ବାଟର କଲର ପେଣ୍ଟିଙ୍ଗ, ଫିଲିନ କଲର ପେଣ୍ଟିଙ୍ଗ ଓ କାର୍ଟୁନିଙ୍ଗ କରେସପନ୍‌ଡେନ୍ସ କୋର୍ସେସ ରେ ଯୋଗ ଦିଅନ୍ତୁ ।

Vision 7670ri.

**List of Prize Winners for Chandamama-Camlin Colouring Contest No. 1**

*1st Prize*: Tirthabasi Das, Rourkela. *2nd Prize*: Sri Sruhutku Mohapat, Poona. *3rd Prize*: Saroj Ku Mishra, Barapet. *Consolation Prizes*: Sri Satyabrata Sandha, B. B. S. R. 3, Orissa. Sri Kanti Kumar Bit, Balangir. S. Chitrapuri, Bhubaneshwar. Tanuja Patnaik, Bhubaneshwar. Rabi Prasad Acharya, Bhubaneshwar. *Merit Certificates*: Sujata Dash, Puri. Radheshyam Meher, Tarabha. Debasis Das, Calcutta. Soumendra Kumar Das, Calcutta. Subhra Sahu, Bhubaneshwar. Sri Kalyan Das, Rourkela. Tayanta Ku Nayak, Balasore. Manorama Rout, 2 R.B. 13 B. B. S. R. 6. Shri Sudhanshy Rath Bhubaneshwar. Pravash Kumar Das, Rourkela

# ଜହ୍ନ ମାମୁଁ

ସଂସ୍ଥାପକ : 'ଚନ୍ଦ୍ରପାଣୀ'

ସଞ୍ଚାଳକ : ନାଗି ରେଡ୍‌ଡୀ

---

ସଂସାରରେ କେତେଜଣ ନିଃସ୍ୱାର୍ଥପର ଭାବରେ ସତ୍ୟ ବା ବିବେକଚାଳିତ ଭାବରେ କାମ କରନ୍ତି ? ଖୁବ୍ ବେଶି ନୁହଁନ୍ତି । ଏ ମାସର 'ବେତାଳ କଥା'ରେ ଏହି ସ୍ୱଳ୍ପ ସଂଖ୍ୟକ ଲୋକଙ୍କ ଭିତରୁ ଜଣକ ଚରିତ୍ର ବର୍ଣ୍ଣନା କରାଯାଇଛି । ବିବେକ ଚାଳିତ ହୋଇ ସେ ଯେ କେବଳ ନିଶ୍ଚିତ ଆଶୁ ଲାଭରେ ଜଳାଞ୍ଜଳି ଦେଲା, ସେତକ ନୁହେଁ, ଅନ୍ୟ କେହି ତାକୁ ଭୁଲ୍ ବୁଝିଲା କି ଠିକ୍ ବୁଝିଲା ସେଥିପ୍ରତି ମଧ୍ୟ ତା'ର ଭ୍ରୂକ୍ଷେପ ନ ଥିଲା । ଏଭଳି ବ୍ୟବହାର ପାଇଁ ଲୋଡ଼ା ଆତ୍ମବିଶ୍ୱାସ ।

---

ବର୍ଷ : ୯ ଜୁନ୍ ୧୯୭୭ ଅଙ୍କ : ୧୨





# ମିତ୍ରଲାଭ

[ ୨ ]

ଶିକାରୀ ଫେରିଯିବା ଉତ୍ତାରୁ ଚିତ୍ରଗ୍ରୀବ ଅନ୍ୟ କପୋତମାନଙ୍କୁ କହିଲା; "ଆମ ଶତ୍ରୁ ହତାଶ ହୋଇ ଫେରି ଗଲାଣି । ଏଥର ଆମେ ନିଶ୍ଚିନ୍ତ ମନରେ ମହିଳାରୂପ୍ୟ ନଗରୀ ଅଭିମୁଖେ ଯାଇ-ପାରିବା । ସେ ନଗରୀର ଉତ୍ତର ପ୍ରାନ୍ତରେ ହିରଣ୍ୟକ ନାମରେ ମୋର ଜଣେ ମିତ୍ର ଅଛନ୍ତି । ସେ ଜାତିରେ ମୂଷିକ । ସେ ଆମ ଜାଲ କାଟି ଆମକୁ ମୁକ୍ତ କରିବେ । ବିପଦ ବେଳେ ପ୍ରକୃତ ମିତ୍ରହିଁ ସହାୟତା କରେ । ଅନ୍ୟମାନେ ଟିକିଏ ଚୂଃ ଚୂଃ ମଧ୍ୟ କରନ୍ତି ନାହିଁ ।"

ଚିତ୍ରଗ୍ରୀବ ଆକାଶ ପଥରେ ମାର୍ଗ ଦେଖାଇ ଜାଲ-ନିବଦ୍ଧ ପକ୍ଷୀମାନଙ୍କୁ ହିରଣ୍ୟକର ନିବାସ ସ୍ଥଳ ବ୍ୟୂହ ପର୍ଯ୍ୟନ୍ତ ନେଇଗଲା । ସେଠାରେ ଅବତରଣ କରି କପୋତ-ରାଜ ବିଳ ଦ୍ୱାରରେ ପାଟିକଲା, "ହେ ମିତ୍ର ହିରଣ୍ୟକ ! ଶୀଘ୍ର ବାହାରି ଆସ । ମୁଁ ବଡ଼ ବିପଦରେ ପଡ଼ିଛି ।" ତାହା ଶୁଣି ହିରଣ୍ୟକ ବିଳ ମଧ୍ୟରୁ ପ୍ରଶ୍ନ କଲା; "ତୁମେ କିଏ ? କି ଧରଣର ବିପଦରେ ପଡ଼ିଛ । ? ମୁଁ ବା କ'ଣ କରିପାରେଁ ? ସବୁ କଥା ଆଗେ ସବିସ୍ତାରେ କୁହ ।"

ଚିତ୍ରଗ୍ରୀବ କହିଲା, "ଆରେ ଭାଇ ! ମୁଁ କପୋତ-ରାଜ ଚିତ୍ରଗ୍ରୀବ । ତୁମ ମିତ୍ର । ଶୀଘ୍ର ବାହାରି ଆସି ଆମରି ସହାୟତା କର ।"

ଏଥର ମିତ୍ରର କଣ୍ଠସ୍ୱର ବାରିପାରି ହିରଣ୍ୟକ ତତ୍‌କ୍ଷଣାତ୍ ବାହାରି ଆସିଲା । କିନ୍ତୁ ମିତ୍ର ଓ ତା' ଅନୁଚରମାନଙ୍କୁ ସେ ଅଦ୍ଭୁତ ଅବସ୍ଥାରେ ଦେଖି ବିସ୍ମିତ ହୋଇ ପଚାରିଲା, "ଆରେ ଇଏ କ'ଣ ?"

"ମିତ୍ର ! କ'ଣ ଆଉ କହିବି । ପୂର୍ବ ଜନ୍ମର ପାପରୁ ଏ ବିପଦରେ ପଡ଼ିବାକୁ ହୋଇଛି ।

ଶେଷ ପ୍ରଚ୍ଛଦ ପୃଷ୍ଠାର ଛବି ଦେଖନ୍ତୁ

ଲୋଭରେ ପଡ଼ି ଆମେ ଏ ବିପଦକୁ ବରଣ କରିଛୁଁ ବୋଲି ! ତୁମେ ଆଉ ବିଳମ୍ବ ନ କରି ଆମ ବନ୍ଧନ ତୁଟାଅ ।" ଚିତ୍ରଗ୍ରୀବ କହିଲା ।



ହିରଣ୍ୟକ ପାଖକୁ ଲାଗି ଆସି ମନ୍ତବ୍ୟ ଦେଲା, "କାହିଁ କେତେ ଦୂରରୁ ପକ୍ଷୀ ନିଜ ଆହାର ଦେଖି ପାରେ; ଅଥଚ ତା' ପାଇଁ ବିଛା ହୋଇଥିବା ଜାଲ ଦେଖି ପାରେ ନାହିଁ ! ତେବେ, ଯିଏ ଯେତେ ବଳବାନ ବା ସତର୍କ ହେଉ ନା କାହିଁକି, ସେ ବିପଦ ଏଡ଼ାଇ ପାରିବ ନାହିଁ । ସୂର୍ଯ୍ୟ ଚନ୍ଦ୍ର କେଡ଼େ ବଳବାନ ନୁହନ୍ତି ! କିନ୍ତୁ ରାହୁ କ ତାଙ୍କୁ ଛାଡ଼େ ? ମତ୍ତ ହସ୍ତୀ, ବିଷ-ଧର ସାପ, ଶୂନ୍ୟରେ ଉଡ଼ୁପାରୁଥିବା ପକ୍ଷୀ ତ ପୁଣି ମଣିଷ ହାତରେ ପଡ଼ନ୍ତି ! ବାସ୍ତବିକ, ସଙ୍କଟ ଓ ମୃତ୍ୟୁ ହାତରୁ ନିସ୍ତାର କାହିଁ ? ସେ ଯାହା ହେଉ, ତୁମେମାନେ ଯେ ନିଶ୍ଚିତ ମୃତ୍ୟୁ ହାତରୁ ଖସି ଆସି ପାରିଛ, ତାହା କମ ଭାଗ୍ୟର କଥା ନୁହେଁ ।"

ଏହା କହି ହିରଣ୍ୟକ ପ୍ରଥମେ ଚିତ୍ରଗ୍ରୀବକୁ ପାଶମୁକ୍ତ କରିବା ପାଇଁ ଉଦ୍ୟତ ହୁଅନ୍ତେ ଚିତ୍ର-ଗ୍ରୀବ କହିଲା, "ମିତ୍ର ! ତୁମେ ପ୍ରଥମେ ମୋ ଅନୁଚରମାନଙ୍କୁ ମୁକ୍ତ କର । ତା'ପରେ ମୋ ପାଳି ପଡ଼ିବ ।"

"ସେଇଟା କମିତି କଥା ? ତୁମେ ରାଜା । ପ୍ରଥମେ ତୁମ ସେବା କରିବା ମୋର କର୍ତ୍ତବ୍ୟ ।" ହିରଣ୍ୟକ ଉତ୍ତର ଦେଲା ।

"ନା ଭାଇ, ସେମିତି କର ନାହିଁ । ଏମାନେ ସମସ୍ତେ ମୋ ଉପରେ ଆସ୍ଥା ରଖି ରହିଛନ୍ତି । ମୁଁ ଏମାନଙ୍କର ହିତାକାଂକ୍ଷୀ ବୋଲି ସେମାନେ ବିଶ୍ୱାସ କରନ୍ତି । ତେଣୁ ମୁଁ ପ୍ରଥମେ ସେମାନଙ୍କ ନିରାପତ୍ତା କଥା ଭାବିବା ଆବଶ୍ୟକ । ଏମାନଙ୍କ ବନ୍ଧନ କାଟୁଁ କାଟୁଁ ହୁଏତ ତୁମ ଦାନ୍ତ ଦୁର୍ବଳ ହୋଇ ଯାଇପାରେ । କିମ୍ବା ଶିକାରୀ ପୁଣି ଏଠି ପହଞ୍ଚି ଯାଇପାରେ । ସେତେବେଳେ ମୁଁ ମୁକ୍ତ ହୋଇ ଯାଇଥିବି ଅଥଚ ଏମାନେ ବନ୍ଦୀ ହୋଇ ରହିଥିବେ, ତାହା ମୋ ପକ୍ଷରେ ଅପରାଧ ହେବ । ଯେଉଁ ରାଜା ନିଜ ଅନୁଚରମାନଙ୍କୁ ବିପଦରେ ରଖି ନିଜେ ସୁଖ ଭୁଞ୍ଜେ, ସେ ନରକରେ ପଡ଼େ ।" ଚିତ୍ରଗ୍ରୀବ ବୁଝାଇଦେଲା ।

ଏଥର ହିରଣ୍ୟକ କହିଲା, "ମିତ୍ର ! ମୁଁ ତୁମର ସ୍ୱଭାବ ତଥା ରାଜାର କର୍ତ୍ତବ୍ୟ କଥା

ଜାଣେ । ଖାଲି ତୁମକୁ ପରୀକ୍ଷା କରିବା ପାଇଁ ସେମିତି କହୁଥିଲି । ତୁମେ ସହଜରେ ଉତ୍ତୀର୍ଣ୍ଣ ହେଲ । ବାସ୍ତବିକ, ତୁମେ ସମଗ୍ର କପୋତ ଜାତି ଉପରେ ରାଜା ବୋଲାଇବାକୁ ହକ୍‌ଦାର । ଯେଉଁ ରାଜା ଏଭଳି ବିବେକୀ; ସେ ତ୍ରିଲୋକ ଶାସନ କରିବାକୁ ଯୋଗ୍ୟ । ବେଶ୍ । ମୁଁ ପ୍ରଥମେ ତୁମ ଅନୁଚରମାନଙ୍କ ବନ୍ଧନ କାଟୁଛି ।"

ଏହାପରେ ହିରଣ୍ୟକ ସବୁ କପୋତଙ୍କୁ ବନ୍ଧନ-ମୁକ୍ତ କଲା । ଚିତ୍ରଗ୍ରୀବ ଓ ଅନ୍ୟ କପୋତମାନେ ଆନନ୍ଦିତ ହୋଇ ବିଦାୟ ମାଗିଲେ । ହିରଣ୍ୟକ କହିଲା, "ପୁଣି କେବେ ଏପରି ବିପଦରେ ପଡ଼ିଲେ ମୋ ପାଖକୁ ଆସି-ବାକୁ ସଙ୍କୋଚ କରିବ ନାହିଁ । ଏଥର ମୁକ୍ତ ଆକାଶକୁ ଉଡ଼ିଯାଅ ।"

କପୋତ ଦଳ ଉଡ଼ିଯିବା ପରେ ହିରଣ୍ୟକ ବିଲ ଭିତରେ ପଶିଗଲା ।

କାକ ଲଘୁପତନକ ଅଦୂରରେ ଏକ ବୃକ୍ଷ ଉପରେ ବସି ସବୁ କଥା ଲକ୍ଷ୍ୟ କରୁଥିଲା । ସେ ଚିନ୍ତା କଲା ! "ଏ ମୂଷିକ ହିରଣ୍ୟକ କେତେ ବିବେକୀ ସତେ ! ମହତ୍ ବନ୍ଧୁ ଭଳି ସମ୍ପଦ ଆଉ କିଛି ନାହିଁ । ଏତେ ବ୍ୟାପକ ଯେଉଁ ସମୁଦ୍ର, ସେ ମଧ୍ୟ ଚନ୍ଦ୍ରମା ସହାୟତାରେ ସିନା ଉଦ୍‌ଦାମ ହୋଇ ଉପରକୁ ଉଠିପାରେ !

ହିରଣ୍ୟକ ସହ ବନ୍ଧୁତା ସ୍ଥାପନ ଉଦ୍ଦେଶ୍ୟରେ ଲଘୁପତନକ ବିଲ ପାଖକୁ ଯାଇ ଡାକିଲା, "ମୂଷିକବର ! ଦୟାକରି ଆଉ ଥରେ ପଦାକୁ ଆସ । କଥା ଅଛି । ଭୟ କରିବାର କୌଣସି କାରଣ ନାହିଁ ।"

ହିରଣ୍ୟକ ପଚାରିଲା, "କିନ୍ତୁ ତୁମେ କିଏ ?"

"ମୁଁ ଏକ କାକ । ନାମ ଲଘୁପତନକ ।" ଉତ୍ତର ଦେଲା ।

ହିରଣ୍ୟକ ଏ ଉତ୍ତରରେ ବିଲ ଭିତରେ ଆହୁରି ତଳକୁ ଖସି ଯାଇ କହିଲା, "ତୁମେ ଏଠୁ ଶୀଘ୍ର ଗଲ !"

"କାହିଁକି ! ମୋତେ ଏମିତି ତଡ଼ିବାର ହେତୁ କ'ଣ ? ମୋର ତୁମ ସହ ପ୍ରକୃତରେ ବନ୍ଧୁ-ସୁଲଭ କଥାବାର୍ତ୍ତା ଅଛି !" କାଉ କହିଲା ।

"ଦେଖ ବାବୁ, କାକ ସହ ମୂଷିକର ବନ୍ଧୁତା ହୋଇ ପାରେନା । ଯାଅ ।" ହିରଣ୍ୟକ ଶୁଣାଇ ଦେଲା ।






# ମାୟା ସରୋବର

[ ୪ ]

[ନଗର ରକ୍ଷକ ସହ ଜୟଶୀଳ, ସାଧକ ଓ ଶ୍ମଶାନ ପ୍ରହରୀର ପୁତ୍ର ହିରଣ୍ୟପୁରର ମନ୍ତ୍ରୀଙ୍କ ପାଖରେ ଆସି ପହଞ୍ଚିଲେ । ଅପହୃତ ରାଜପୁତ୍ର ଓ ରାଜକନ୍ୟାଙ୍କୁ ଖୋଜି ଆଣିବା ପାଇଁ ମନ୍ତ୍ରୀ ଜୟଶୀଳର ନାମ ପ୍ରସ୍ତାବ କରନ୍ତେ ସେନାପତି-ପୁତ୍ର ମଙ୍ଗଳବର୍ମା ତା'ର ପ୍ରତିବାଦ କରି ନିଜେ ବାହାରିଲା । ଜୟଶୀଳର ତରବାରିରେ ବିଶେଷ ଶକ୍ତି ଅଛି ବୋଲି ମନ୍ତ୍ରୀ କହିଲେ । ମଙ୍ଗଳ ବର୍ମା ସେ ଶକ୍ତି ପରୀକ୍ଷା କରିବାକୁ ପ୍ରସ୍ତୁତ ହେଲା । ତା'ପରେ—]

ସେନାପତି-ପୁତ୍ର ମଙ୍ଗଳବର୍ମା ଖଡ୍‌ଗ ଚାଳନାରେ ପାରଙ୍ଗମ ଥିଲା, ସନ୍ଦେହ ନାହିଁ, କିନ୍ତୁ ଏକା ସାଥିରେ ଦୁଇଟି ବାଘ ଝପଟି ଆସିବାର ଦେଖି ସେ ଡରିଗଲା । ସେ ପଛେଇ ପଛେଇ ବାଘ ଆଗରୁ ହଟି ଯିବାକୁ ଲାଗିଲା । କେଉଁ ପ୍ରକାରେ କେଉଁ ଦିଗରୁ ବାଘକୁ ଆଘାତ କରିବ, ସେକଥା ସେ ଚିନ୍ତା କରୁଛି, ଏତିକିବେଳେ ଗୋଟାଏ ବାଘ ଭୟଙ୍କର ଗର୍ଜନ କରି ତା' ଆଡ଼କୁ ଆଗେଇ ଆସିଲା । ମଙ୍ଗଳବର୍ମା କିଂକର୍ତ୍ତବ୍ୟ ବିମୂଢ଼ ଭାବରେ ଠିଆ ହୋଇ ଠକ୍ ଠକ୍ ଥରିବାକୁ ଲାଗିଲା ।

ତେଣେ ପ୍ରାଚୀର ଉପରେ ଠିଆ ହୋଇ ସେ ଦୃଶ୍ୟ ଦେଖୁଥିବା ଜୟଶୀଳର ମନେହେଲା ମଙ୍ଗଳବର୍ମା ହୁଏତ ଅତ୍ୟନ୍ତ ଆତଙ୍କିତ ହେବା ଫଳରେ ଆତ୍ମରକ୍ଷା ପାଇଁ ମଧ୍ୟ ଅସ୍ତ୍ର ଚାଳନା କରି ପାରିବ ନାହିଁ । ତେଣୁ ସେ ଚିତ୍କାର କରି



କହିଲା, “ମଙ୍ଗଳବର୍ମା ! ଭୟ କରନା । ତୁମେ ଧରିଥିବା ତରବାରୀରେ ରହିଛି ଅଦ୍ଭୁତ ଶକ୍ତି । ଦୁଇ ଚୋଟରେ ଦୁଇ ବାଘଙ୍କୁ ମାରିଦେଇ ପାରିବ ।”

ଏଥିରେ ମଙ୍ଗଳବର୍ମା ଅଳ୍ପ ସମୟ ପାଇଁ ହିମ୍ମତ ଫେରି ପାଇଲା । ଥରେ ସେ ନିଜ ହାତର ତରବାରୀ ଆଡ଼କୁ ଅନାଇଲା । କିନ୍ତୁ ହଠାତ୍ ପୁଣି ମନରେ ସନ୍ଦେହର ଛାୟା ଘୋଟିଗଲା । ଭାବିଲା, ଯଦି ଜୟଶୀଳ ମିଛରେ ଏମିତି ଘୋଷଣା କରୁଥିବ ।”

ଏ ସନ୍ଦେହ ଘୋଟି ଆସିବା ମାତ୍ରେ ପୁଣି ତା' ହାତ ଥରିଲା । ହଠାତ୍ ଗୋଟାଏ ବାଘ ତା' ପାଖକୁ ଡେଇଁ ପଡ଼ି ତା' ବାହୁରେ ପଞ୍ଝା ବସାଇ ଦେଲା । ଆଘାତ ପାଇ ମଙ୍ଗଳବର୍ମା ଆର୍ତ୍ତନାଦ କଲା ମୃତ୍ୟୁ ନିକଟ ବୋଲି ଜାଣି ସେ ଥରେ ସାହସ ବାନ୍ଧି ତରବାରୀକୁ ରୁଣ୍ଡ ପାଖରେ ଧରିଲା । କିନ୍ତୁ ହାତ ଯୋରେ କମ୍ପିବାରୁ ତରବାରୀଟି ତଳେ ଖସି ପଡ଼ିଲା !

ତାହା ଦେଖି ରାଜା କନକାକ୍ଷ ତଥା ମନ୍ତ୍ରୀ ସନ୍ତ୍ରସ୍ତ ହୋଇ ଉଠିଲେ । ବାଘ ଦୁଇଟି କେତେ ପାହୁଣ୍ଡ ପଛକୁ ହଟି ଯାଇ ଲାଞ୍ଜ ହଲାଇ ମଙ୍ଗଳବର୍ମା ଉପରକୁ କୁଦି ପଡ଼ିବାକୁ ପ୍ରସ୍ତୁତ ହେଉଥାନ୍ତି । ମଙ୍ଗଳବର୍ମା ପ୍ରାଚୀର ଦେହରେ ଘସି ହୋଇ ଆଖି ବୁଜି ମୃତ୍ୟୁକୁ ଅପେକ୍ଷା କରିଥାଏ

“ହେ ବୀର ଯୁବକ ଜୟଶୀଳ !…” ସାଧକ ହଠାତ୍ ପାଟି କରି ଉଠିଲେ ।

ସାଧକଙ୍କ ମୁଖ ନିଃସୃତ ବାକ୍ୟ ସମ୍ପୂର୍ଣ୍ଣ ନ ହେଉଣୁ ଜୟଶୀଳ ଉଚ୍ଚ ପ୍ରାଚୀର ଉପରୁ ବିଜୁଳି ବେଗରେ ତଳକୁ ଡେଇଁ ପଡ଼ିଲା । ବାଘମାନେ ହଠାତ୍ ଚମକି ଯାଇ ପଛକୁ ଘୁଞ୍ଚି ଯାଆନ୍ତେ ସେ ସେଇ ସୁଯୋଗରେ ତଳେ ପଡ଼ିଥିବା ତରବାରୀଟି ଉଠାଇ ନେଲା ।

ରାଜା କନକାକ୍ଷ ଚମତ୍କୃତ ହୋଇ ମନ୍ତ୍ରୀଙ୍କୁ କହିଲେ, “ଦେଖୁଛ ଏ ଯୁବକର ସାହସ ? ଏ ନିଶ୍ଚେ ଅସାଧାରଣ ବୀର କ୍ଷତ୍ରିୟ ହୋଇଥିବ । ଏହାକୁହିଁ ଆମେ ଅପହୃତ ଯୁବରାଜ ଓ ରାଜ-

କନ୍ୟାଙ୍କ ସନ୍ଧାନରେ ନିୟୋଗ କରିବା ।"

"ମହାରାଜ ! ଆଗେ ଏ ଯୁବକ ପ୍ରାଣ ଧରି ବାହାରି ଆସୁ ! ତା'ପରେ ସେକଥା ବିଚାର କରିବା । ମନେହୁଏ, ବର୍ତ୍ତମାନ ଦୁଇଟି ଯାକ ବାଘ ତାକୁ ଆକ୍ରମଣ କରିବାକୁ ଉଦ୍ୟତ ହେଉ-ଛନ୍ତି ।" ମନ୍ତ୍ରୀ ଧର୍ମମିତ୍ର ରାଜାଙ୍କୁ କହିଲେ ।

ଜୟଶୀଳ ମଧ୍ୟ ଠିକ୍ ବୁଝିଥିଲା ଯେ ଦୁଇଟି ଯାକ ବାଘ ତା' ଉପରକୁ କୁଦି ପଡ଼ିବାକୁ ଯାଉ-ଛନ୍ତି । ସେମାନଙ୍କୁ ଉତ୍ତେଜିତ କରିବା ପାଇଁ ସେ ମାଟିରେ ଗୋଡ଼ କଚଡ଼ି ଥରେ ହୁଙ୍କାର କଲା । ତା'ପରେ ପ୍ରାଚୀର ଆଡ଼କୁ ଦୌଡ଼ି ପଳାଇବାର ଅଭିନୟ କଲା । ଗୋଟାଏ ବାଘ ଏହାକୁ ସୁଯୋଗ ମନେ କରି ତା' ଉପରକୁ ଲମ୍ଫ ପ୍ରଦାନ କରିବା ମାତ୍ରେ ଜୟଶୀଳ ଦୂରରୁ ତରବାରି ସାହାଯ୍ୟରେ କଲା ଏକ ଶକ୍ତ ପ୍ରହାର ।

ଆଘାତ ପାଇ ବାଘ ମୁହୂର୍ତ୍ତକ ପାଇଁ ଦବି-ଗଲା । କିନ୍ତୁ ପର ମୁହୂର୍ତ୍ତରେ ଭୟଙ୍କର ଗର୍ଜନ କରି ପଛ ଗୋଡ଼ ଦୁଇଟିରେ ଛିଡ଼ା ହୋଇ ପଡ଼ି ଜୟଶୀଳକୁ ପୁନଃ ଆକ୍ରମଣ କରିବାକୁ ପ୍ରସ୍ତୁତ ହେଲା । ଜୟଶୀଳ ତତ୍କ୍ଷଣାତ୍ ପାଦେ ଆଗକୁ ଆସି ଯଥାଶକ୍ତି ଜୋରରେ ବାଘ ଛାତିରେ ତର-ବାରି ଭୁଷି ଦେଲା ।

ବାଘ ଗର୍ଜନ କରି ତଳେ ଓଲଟି ପଡ଼ିଲା ଓ ଛଟପଟ ହେବାକୁ ଲାଗିଲା । ଏ ଘଟଣା ମୁହୂର୍ତ୍ତକ ଭିତରେ ଘଟିଗଲା । ନିଜ ସାଥୀ ତଳେ ପଡ଼ି ଛଟପଟ ହେଉଥିବାର ଦେଖି ଅନ୍ୟ ବାଘଟି





ଧିରେ ଧିରେ ପଛକୁ ହଟି ତା'ପରେ ଖୁବ୍ ଯୋରରେ ଦୌଡ଼ି ମାରି ଖୋଲା ଥିବା ନିଜର ପିଞ୍ଜରା ଭିତରେ ପଶିଗଲା ।

ରାଜା କନକାକ୍ଷଙ୍କ ସମେତ ସମସ୍ତେ ଉପରୁ ହର୍ଷଧ୍ୱନି କଲେ । ସେତେବେଳକୁ ଯାଇ ମଙ୍ଗଳବର୍ମା ଆଖି ଖୋଲିଲା । ଆଗରେ ମୃତ ବାଘ ଓ ଅନ୍ୟ ବାଘଟି ପିଞ୍ଜରା ଭିତରେ ପଶି ଭୟାର୍ତ୍ତ ଗର୍ଜନ କରୁଥିବାର ଦେଖି, ଅବସ୍ଥା ଅନୁମାନ କରିନେଇ ସେ ରାଜାଙ୍କ ଆଡ଼କୁ ଅନାଇ କହିଲା, "ମହାରାଜ ! ଏ ତରବାରିରେ ବିଶେଷ ଶକ୍ତି ରହିଛି ନିଶ୍ଚୟ । କିନ୍ତୁ ତରବାରିଟି ଦୈବାତ୍ ମୋ ହାତରୁ ଖସି ପଡ଼ିବାରୁ ମୁଁ ତାକୁ ବ୍ୟବହାର କରି ପାରିଲି ନାହିଁ । କିନ୍ତୁ ମୁଁ କ'ଣ ଯଥେଷ୍ଟ ସାହସିକତାର ପରିଚୟ ଦେଇ ନାହିଁ । ଜୟଶୀଳ ଯାହା କଲେ, ମୁଁ ବି ତା' କରି ପାରିଥାନ୍ତି ।"

"ବାଃ, ମଙ୍ଗଳବର୍ମା ! ତୁମେ ବେଶ୍ ଯୁକ୍ତିପୂର୍ଣ୍ଣ କଥା କହି ଜାଣ । ବାଘ ଭାଗ୍ୟକୁ ତମ ବାହୁରେ ସାମାନ୍ୟ ଆଘାତ କରିଛି, ଆଉ କେଉଁଠି ନୁହେଁ । ତମ ଜାତକ ଭଲ ବୋଲି କହିବାକୁ ହେବ ।" ମନ୍ତ୍ରୀ ଧର୍ମମିତ୍ର ବ୍ୟଙ୍ଗପୂର୍ଣ୍ଣ ସ୍ୱରରେ କହିଲେ ।

"ମୁଁ ଆଗରୁ କହି ନ ଥିଲି ? ମହାକାଳ ସ୍ୱୟଂ ଜୟଶୀଳଙ୍କୁ ଏ ଶକ୍ତିଶାଳୀ ଅସ୍ତ୍ର ପ୍ରଦାନ କରିଛନ୍ତି । ଖାଲି ବାଘଟାଏ କାହିଁକି, ଏ ତରବାରି ଧରି ଜୟଶୀଳ ବିଶ୍ୱ ଜୟ କରିବାକୁ ସକ୍ଷମ ହେବେ ।" ସାଧକ ଅତି ଆନନ୍ଦିତ ହୋଇ କହିଲେ ।

"କିନ୍ତୁ ଏଡ଼େ ଶକ୍ତିଶାଳୀ ତରବାରି ମଙ୍ଗଳବର୍ମା ହାତରେ କିଛି କାମ ଦେଲା ନାହିଁ !" ରାଜା ବିଦ୍ରୂପାତ୍ମକ କଣ୍ଠରେ କହିଲେ ।

ମନ୍ତ୍ରୀ ଧର୍ମମିତ୍ର ହାତ ହଲାଇ ଜୟଶୀଳଙ୍କୁ କହିଲେ, "ତମେ ଏବେ ଉପରକୁ ଉଠି ଆସ । ତମେ ଯେ କେବଳ ନିଜ ସାହସର ପରିଚୟ ଦେଲ ସେତିକି ନୁହେଁ, ଆମ ସେନାପତି ସୁନ୍ଦର ପ୍ରାଣଟି ବି ରକ୍ଷା କଲ । ତେଣୁ ମୁଁ ତମକୁ ଅଭି-

ନନ୍ଦନ ଜଣାଉଛୁ । ଆମ ସେନାପତି ବର୍ତ୍ତମାନ ଅନୁପସ୍ଥିତ । ସେ ଫେରି ଆସି ଯେତେବେଳେ ଶୁଣିବେ ଯେ ପୁଅ ତାଙ୍କର ବାଘ ମୁହଁକୁ ଯାଇ-ଥିଲା, ସେ ବଡ଼ ଦୁଃଖିତ ହେବେ ।"

ରାଜା ମନ୍ଦ ମନ୍ଦ ହସି ତଳକୁ ହାତ ବଢ଼ାଇ କହିଲେ, "ଜୟଶୀଳ ! ତମେ ମୋ ହାତ ଧରି ଉଠି ଆସି ପାରିବ ତ ?"

"ମହାରାଜ ! ତା' ପାରିବି । କିନ୍ତୁ ପ୍ରଥମ ବାଘର ପିଞ୍ଜରି ମୁହଁ ବନ୍ଦ କରିବା ଦରକାର ମୁଁ ଉପରକୁ ଚାଲିଗଲେ ନିରସ୍ତ୍ର ମଙ୍ଗଳବର୍ମାଙ୍କୁ ବାଘ ଅସୁବିଧାରେ ପକାଇ ପାରେ ।" ଜୟଶୀଳ କହିଲା ।



"ମଙ୍ଗଳବର୍ମା ହାତରେ ଅସ୍ତ୍ର ଥିଲେ ବି ସେ ନିରସ୍ତ୍ର ଭଳି ବ୍ୟବହାର କରିବ । ଯିଏ ଭୀରୁ ହୋଇଥିବ, ତାହା ହାତରେ ସ୍ୱୟଂ ଇନ୍ଦ୍ର ତାଙ୍କ ବଜ୍ରାୟୁଧ ସମର୍ପି ଦେଲେ ମଧ୍ୟ କ'ଣ ଲାଭ ହେବ ?" ସାଧକ ବ୍ୟଙ୍ଗ କରି କହିଲେ ।

ରାଜାଙ୍କ ପ୍ରସାରିତ ହାତ ଧରି ଗୋଟାଏ ଝୁଙ୍କରେ ଜୟଶୀଳ ପ୍ରାଚୀର ଉପରକୁ ଉଠି ଆସିଲା । ରାଜା ଓ ମନ୍ତ୍ରୀ ତା' କାନ୍ଧ ଥାପୁଡ଼ାଇ ତା' ବୀରତ୍ୱର ପ୍ରଶଂସା କଲେ । ସାଧକ ତାକୁ ଆଲିଙ୍ଗନ କରି କହିଲେ, "ଜୟଶୀଳ ! ତମେ ଅସାଧାରଣ ବୀର । ତମେ ଯେ ଖାଲି ମହା-କାଳକୁ ବଶ କରିବା ବାଟରେ ମୋର ସହାୟତା କରି ପାରିବ, ସେତିକି ନୁହେଁ, ଅପହୃତ ଯୁବରାଜ ଓ ରାଜକନ୍ୟାଙ୍କ ସନ୍ଧାନ ମଧ୍ୟ ତମେ ଆଣିଦେଇ ପାରିବ ।"

"ସାଧକବର ! ଆଗେ ପ୍ରାସାଦ ଭିତରକୁ ଯିବା । ତା'ପରେ ଏସବୁ ପ୍ରସଙ୍ଗ ଆଲୋଚନା କରିବା । ବର୍ତ୍ତମାନ ଚୁପ୍ ରୁହ ।" ଏହା କହି ମନ୍ତ୍ରୀ ଅଦୂରରେ ଠିଆ ହୋଇଥିବା ସେବକକୁ ଡାକିଲେ ଓ ମଙ୍ଗଳବର୍ମାଙ୍କୁ ଉପରକୁ ଆଣି ତା' ଆଘାତ ଉପରେ ପଟି ବାନ୍ଧିବାକୁ ନିର୍ଦ୍ଦେଶ ଦେଲେ ।

ତା'ପରେ ରାଜା ପାତ୍ର-ମିତ୍ର ଗହଣରେ ପ୍ରାସାଦ ଭିତରକୁ ଗଲେ । ଜାନୁଆରୀ ଶାଳାର



ରକ୍ଷକ ବାଘର ପିଞ୍ଜରା ବନ୍ଦ କଲା ଓ ଅପମାନରେ ଅଧାମରା ହୋଇ ଠିଆ ହୋଇଥିବା ମଙ୍ଗଳବର୍ମା ପାଖକୁ ଯାଇ ତା' କ୍ଷତ ପରୀକ୍ଷା କରି କହିଲା, "ଏ କ୍ଷତ ଆଜ୍ଞା ଏମିତି କିଛି ନୁହେଁ, ସପ୍ତାହେ ଭିତରେ ଠିକ୍ ହୋଇଯିବ । କିନ୍ତୁ ଦୁଃଖର କଥା ହେଲା, ଜୟଶୀଳଙ୍କ ହାତରେ ଯେଉଁ ବାଘ ମଲା, ସେଇଟା ଥିଲା ଖୁବ୍ ତେଜୀସ୍ୱାନ ବାଘ । ତାକୁ ବଣରେ ଆମେ ଧରିବାବେଳେ ଆମର ଦୁଇ ଜଣ ଲୋକଙ୍କୁ ଖତମ କରିଥିଲା । ତା'ପରେ ମୁଁ ତାକୁ ବଶ କରିଥିଲି ।" ଜାନୁଆର ରକ୍ଷକ ମୃତ ବାଘର ଦେହ ଆଉଁସି କ୍ଷୋଭ ଭରା କଣ୍ଠରେ ଏକଥା କହିଲା ।

"ବାଘଟାଏ ମରିବା ଏମିତି କିଛି ବିଶେଷ ଘଟଣା ନୁହେଁ । ତେବେ କହିଲ, ଜୟଶୀଳର ତରବାରିରେ କ'ଣ ବାସ୍ତବିକ ବିଶେଷ କିଛି ଶକ୍ତି ରହିଛି ? ତମ ଧାରଣା କ'ଣ ?" ମଙ୍ଗଳବର୍ମା ପଚାରିଲା ।

ବାଘ ପ୍ରତି ଏପରି ତାଚ୍ଛଲ୍ୟସୂଚକ ଉକ୍ତି ଶୁଣି ଜାନୁଆରରକ୍ଷକ ଖୁବ୍ ବିରକ୍ତ ହେଲା, କିନ୍ତୁ ସେନାପତି-ପୁଅକୁ ବା କ'ଣ କହିବ । କ୍ରୋଧ ସମ୍ଭାଳି ସେ କହିଲା, "ଆଜ୍ଞା ! ତରବାରିରେ ଶକ୍ତି ଥିବା ନ ଥିବା କଥା ମୁଁ ଜାଣିବି କିପରି ? ତେବେ ଗୋଟାଏ କଥା ଜାଣେ । ଏ ତରବାରି ଅତି ତୀକ୍ଷ୍ଣ ଶାଣିତ । ଏହାକୁ ବ୍ୟବହାର କରୁଥିବା ଲୋକ ଖୁବ୍ ସାହସୀ ।"

"ତେବେ ତ ଅଧା ରାଜ୍ୟ ସହ ରାଜକୁମାରୀଙ୍କୁ ସେ ଟୋକା ପାଇଯିବ । ମୁଁ କରିବି କ'ଣ ?" ମଙ୍ଗଳବର୍ମା ନିଜକୁ ନିଜେ ଗୁଣୁ ଗୁଣୁ କରି କହିହେଲା ।

ମନ୍ତ୍ରୀ ପଠାଇଥିବା ସେବକଟି ଆସି ମଙ୍ଗଳବର୍ମାକୁ ପ୍ରାଚୀର ଉପରକୁ ଉଠାଇ ନେଲା । ବାହାରକୁ ଆସି ମଙ୍ଗଳବର୍ମା ଆଉ ଥରେ ପ୍ରାସାଦ ଆଡ଼କୁ ସତୃଷ୍ଣ ନୟନରେ ଅନାଇ ପଚାରିଲା, "ସେ ଯୁବକକୁ ରାଜା କିଛି ପୁରସ୍କାର ଦେଇ ବିଦାୟ ଦେଲେ ନା ଯୁବରାଜ ରାଜକନ୍ୟାଙ୍କ ସନ୍ଧାନରେ ପଠାଇଲେ, କହି ପାରିବ ?"



"ଆଜ୍ଞା ! ସେସବୁ କଥା ମୋତେ ମାଲୁମ ନାହିଁ । ସମସ୍ତେ ପ୍ରାସାଦ ଭିତରକୁ ଗଲେଣି । କେବଳ ଶ୍ମଶାନ-ପ୍ରହରୀର ପୁଅଟି ବାହାରେ ଠିଆ ହୋଇଛି । ମୁଁ ଏତିକି ଜାଣେ ।" ସେବକ କହିଲା ।

ସେତିକିବେଳେ ସେ ପ୍ରହରୀ-ପୁଅ ପାଟିକଲା, "ମହାରାଜ ! ମୋ ବାପା ମରିଯାଇ ପୁଣି ବଞ୍ଚି ପୁଣି ମଲା ! ମୋର ଏ ଦୁଃଖର କିଛି ପ୍ରତିକାର ହେଉ ।"

ତା' ପାଟି ଶୁଣି ମନ୍ତ୍ରୀ ଧର୍ମମିତ୍ର ବାହାରି ଆସି କହିଲେ, "ଆରେ ଥରେ ମଲେ ଯାହା ଦୁଇଥର ମଲେ ସେ ଇଆ । ମହାରାଜା ତୋତେ ସବୁ ଶ୍ମଶାନ ଉପରେ ମୁଖ୍ୟ ପ୍ରହରୀ ନିଯୁକ୍ତ କଲେ । ହେଲା ? ଯେତିକି ଦରମା ପାଉଥିଲୁ, ଏଣିକି ତା'ର ଦଶଗୁଣ ପାଇବୁ । ଯା । ଆଉ ପାଟିଗୋଳ କରନା ।"

"ହଜୁର ! ଆପଣଙ୍କର ଏ ଦୟା ମୁଁ ସାରା ଜୀବନ ଭୁଲି ପାରିବି ନାହିଁ । ବାପା ଥରେ ମଲେ ସେ ଦୁଃଖ ଦୂର ନ ହେଉଣୁ ସେ ପୁଣି ମଲେ । ସେ ବଞ୍ଚିଥିଲେ ମୋର ଏ ପଦପ୍ରାପ୍ତିରେ କେତେ ଖୁସି ହୋଇ ନ ଥାନ୍ତେ !" ପ୍ରହରୀ-ପୁଅ କହିଲା ।

ମନ୍ତ୍ରୀ ଟିକିଏ ମୃଦୁ ହସି ପ୍ରହରୀ-ପୁଅକୁ ସେଠାରୁ ଚାଲି ଯିବାକୁ ଆଦେଶ ଦେଇ ପୁଣି ପ୍ରାସାଦ ଭିତରକୁ ଚାଲିଗଲେ ।

ରାଜା କନକାକ୍ଷ ସେତେବେଳେ ଗମ୍ଭୀର ଚିନ୍ତାମଗ୍ନ ଥିଲେ । ସେ ମନ୍ତ୍ରୀଙ୍କ ଆଡ଼କୁ ଅନାଇ କହିଲେ, "ମହାମନ୍ତ୍ରୀ ଏବେ ଆମର କରଣୀୟ କ'ଣ ? ଯୁବରାଜ ଓ ରାଜକନ୍ୟାଙ୍କୁ ଖୋଜି ବାହାର କରିବାରେ ତ ଆମର ସବୁ କର୍ମଚାରୀ ଅସଫଳ ହେଲେ । ଏଥର ଏ ଯୁବକକୁ ସେ ଦାୟିତ୍ୱ ଦେବା, ନା କ'ଣ ?"

ମନ୍ତ୍ରୀ ଜୟଶୀଳ ଆଡ଼କୁ ଅନାଇ କିଛି କହିବାକୁ ଯାଉଛନ୍ତି, ସେତିକିବେଳେ ସାଧକ ଉତ୍ସାହ ଭରେ କହିଲା, "ମହାରାଜ ! ଖୁବ୍ ଭଲ କଥା । ତେବେ ଆପଣଙ୍କ ପୁଅ ଝିଅଙ୍କୁ ଖୋଜି ବାହାର

କରିବା ପାଇଁ କେବଳ ସାହସ ଓ ଶକ୍ତି ଯଥେଷ୍ଟ ନୁହେଁ । କିନ୍ତୁ ଅଲୌକିକ ଜ୍ଞାନ ମଧ୍ୟ ଆବଶ୍ୟକ । ତେଣୁ ଜୟଶୀଳ ସହ ଯିବାପାଇଁ ମୋତେ ମଧ୍ୟ ଅନୁମତି ମିଳୁ ।"

ଜୟଶୀଳ ସେତିକିବେଳେ ସୁଯୋଗ ପାଇ କହିଲା, "ମହାରାଜ ! ଆପଣଙ୍କ ପାଖରେ ମୋର ଏକ ନିବେଦନ ଅଛି ।"

"କ'ଣ, କହିପାର," ରାଜା କନକାକ୍ଷ ଉତ୍କଣ୍ଠିତ ଭାବରେ ପଚାରିଲେ ।

"ମହାରାଜ ! ମୁଁ ଜୀବିକା ସନ୍ଧାନରେ ନିଜ ଦେଶ ଛାଡ଼ି ବାହାରିଛି । ମୋତେ ଯଦି ଚାକିରୀଟିଏ ଦିଅନ୍ତେ, ତେବେ ମୁଁ ଚିରଦିନ କୃତଜ୍ଞ ରହନ୍ତି ।" ଜୟଶୀଳ ରାଜାଙ୍କୁ ନିବେଦନ କଲା ।

ରାଜା କନକାକ୍ଷ ମନ୍ତ୍ରୀଙ୍କ ଆଡ଼କୁ ଅନାଇଲେ । ମନ୍ତ୍ରୀ କହିଲେ, "ଯୁବକ ! ମହାରାଜା ତୁମକୁ ଜଣେ କର୍ମଚାରୀ ରୂପେ ନିଯୁକ୍ତ କରି ସାରିଲେଣି । ବର୍ତ୍ତମାନ କର୍ମଚାରୀ ରୂପେ ରାଜାଦେଶ ପାଳନ ତୁମର କର୍ତ୍ତବ୍ୟ । ନୁହେଁ ?"

"ଜରୁର୍ । ଆଦେଶ ଦିଅନ୍ତୁ ମୋତେ କ'ଣ କରିବାକୁ ହେବ ।" ଜୟଶୀଳ କହିଲା ।

ଧର୍ମମିତ୍ର ତୃପ୍ତ କଣ୍ଠରେ କହିଲେ, "ଜୟଶୀଳ ! ଅପହୃତ ଯୁବରାଜ ଓ ରାଜକନ୍ୟାଙ୍କ ସନ୍ଧାନରେ ଯିବା ପାଇଁ ରାଜା ତୁମକୁ ଆଦେଶ ଦେଉଛନ୍ତି ।"

ଜୟଶୀଳ ମସ୍ତକ ଅବନତ କରି ସମ୍ମତି ଦେଲା । ସେତିକିବେଳେ ଜଣେ ପରିଚାରକ ଗୋଟିଏ ହାର ଓ ଗୋଟିଏ ଭଙ୍ଗା ତରବାରୀ ଧରି ସେଠାରେ ପହଞ୍ଚି କହିଲା, "ମହାରାଜ ! ବଣ ଭିତରେ ଏ ଚିଜମାନ ଜଣେ ଶିକାରୀ ପାଇଛି, ବଣର ଯେଉଁ ଅଞ୍ଚଳରୁ ଯୁବରାଜ ଓ ରାଜକନ୍ୟା ନିଖୋଜ ହୋଇଥିଲେ । ସେ ଶିକାରୀ ପ୍ରାୟ ବେହୋସ ହୋଇ ପଡ଼ିଛି ।

(କ୍ରମଶଃ)





## ସାକ୍ଷ୍ୟଦାନ

ରାଜା ବିକ୍ରମାର୍କ ପୁନର୍ବାର ଗଛ ନିକଟକୁ ଫେରି ଗଲେ ଓ ଶବଟିକୁ ଉତାରି ଆଣି କାନ୍ଧରେ ପକାଇ ଭୟଙ୍କର ଶ୍ମଶାନ ଅତିକ୍ରମ କରିବାକୁ ଲାଗିଲେ । ଆଖପାଖରୁ ଶୁଭୁଥାଏ ଶ୍ୱାନଦଳଙ୍କ ବିକଟ ରଡ଼ି ଓ କୌଣସି ଅଶରୀରୀର ଅଟ୍ଟହାସ୍ୟ ।

ହଠାତ୍ ଶବସ୍ଥିତ ବେତାଳ କହିଲା; "ରାଜା ! ମଣିଷର ବିବେକ ବୁଦ୍ଧିରେ କିଛି ସ୍ଥିରତା ନ ଥାଏ । ବିବେକବାନ ଲୋକ ଥରେ ଥରେ ଅବିବେକୀ କାମ କରି ବସେ । ପୁଣି ଅବିବେକୀ ମଧ୍ୟ ସତ୍‌କାର୍ଯ୍ୟ କରିପାରେ । ଶୁଣ ଗୋଟିଏ କାହାଣୀ ।"

ବେତାଳ କହି ଲାଗିଲା : ପ୍ରସୂନ ଥିଲା କୌଶାମ୍ବୀ ନଗରୀର ଏକ ସମ୍ଭ୍ରାନ୍ତ ପରିବାରର ଯୁବକ । ଦୁର୍ଭାଗ୍ୟକୁ, ସେ ବଡ଼ ହେବା ବେଳକୁ

## ବେତାଳ କଥା



ତା' ବଂଶର ଖାନ୍‌ଦାନ୍ ବିଲୁପ୍ତ ହେଲାଣି । ବିଚରା ପ୍ରସୂନ ନିଜ ପରିବାର କିପରି ପ୍ରତିପାଳନ କରିବ ସେ ନେଇ ଚିନ୍ତାରେ ପଡ଼ିଥାଏ ।

ସେହି ନଗରୀରେ ଦୀପକ ନାମକ ଧନୀ ବ୍ୟବସାୟୀ ଥିଲା । ସେ ପ୍ରସୂନକୁ ନିଜର ଗୁମାସ୍ତା ନିଯୁକ୍ତ କଲା । ପ୍ରସୂନ ଅତି ବିଶ୍ୱସ୍ତ ଭାବରେ ମାଲିକର କାମ କରୁଥାଏ ।

ଦିନେ ଦୀପକ ଘରୁ ବାହାର ହେଲା । ଦୀପକ ଗୋଟିଏ ଚାକରକୁ ସନ୍ଦେହ କରି ବେଦମ ମାଡ଼ ଦିଅନ୍ତେ ଚାକରଟି ହଠାତ୍ ମରିଗଲା । ରାଜଦଣ୍ଡ ଭୟରେ ଦୀପକ ସେ ଅପରାଧକୁ ମୈନାକ ନାମକ ଅନ୍ୟ ଗୋଟିଏ ଚାକର ମୁଣ୍ଡରେ ଚପାଇ ଦେଲା । ଏସବୁ ଘଟିବା ବେଳେ ପ୍ରସୂନ ସେଠାରେ ଉପସ୍ଥିତ ଥିଲା ।

ସିପାହୀ ଆସି ମୈନାକକୁ ଧରି ନେଇଗଲେ । ମୈନାକ ରାଜାଙ୍କ ଆଗରେ କହିଲା ଯେ ସେ ନିର୍ଦ୍ଦୋଷ । ପ୍ରସୂନ ସବୁ ଦେଖିଛି । ତାକୁ ପଚରା ଯାଉ । ସେତେବେଳେ ରାଜାଙ୍କ ଆଗରେ ଆହୁରି ଗୁଡ଼ିଏ ବିଚାର ଥିଲା । ତେଣୁ ରାଜା ଏ ବିଚାରକୁ କିଛିଦିନ ପାଇଁ ସ୍ଥଗିତ ରଖିଲେ ।

ଦୀପକ ବୁଝିଲା ଯେ ତା'ର ଭାଗ୍ୟ ପ୍ରସୂନର ସାକ୍ଷ୍ୟ ଉପରେ ନିର୍ଭର କରୁଛି । ସେ ପ୍ରସୂନକୁ ଡାକି କହିଲା ଯେ ପ୍ରସୂନ ଯଦି ତାକୁ ନିର୍ଦ୍ଦୋଷ ବୋଲି ଦରବାରରେ ଘୋଷଣା କରିବ, ତେବେ ସେ ତାକୁ ନିଜର ସ୍ୱାଧୀନ ବ୍ୟବସାୟ ପାଇଁ ବିପୁଳ ଅର୍ଥ ଯୋଗାଇ ଦେବ । ପ୍ରସୂନ ଏ କଥା ମାନିନେଲା ।

କିନ୍ତୁ ପ୍ରସୂନ ଉପରୁ ଦୀପକର ସନ୍ଦେହ ଗଲା ନାହିଁ । ସେ ଜଣେ ବିଶ୍ୱାସୀ ଚାକରକୁ ତା' ମନ କଥା ବୁଝିବା ପାଇଁ ତା' ଘରକୁ ପଠାଇଲା ।

ଚାକର ଯାଇ ପ୍ରସୂନକୁ କହିଲା, "ଆଜ୍ଞା ! ଆପଣ ନିରପରାଧ ମୈନାକକୁ ଜାଣି ଜାଣି ଫାଶି-କାଠରେ ଝୁଲାଇବେ ! ସେଇଟା କେଡ଼େ ବଡ଼ ପାପ ହେବ ଜାଣନ୍ତି ତ ?"

"ପାପପୁଣ୍ୟ କଥା ଜାଣେନା । ଦୀପକ ମୋର ଖାଉନ୍ଦ । ତାକୁ ରକ୍ଷା କରିବା ମୋର କର୍ତ୍ତବ୍ୟ ।

ତା'ଛଡ଼ା ମୁଁ ତା' ସପକ୍ଷରେ ସାକ୍ଷ୍ୟ ଦେଲେ ମୋ ପରିବାର ଭରଣ ପୋଷଣର ସ୍ଥାୟୀ ବ୍ୟବସ୍ଥା ହୋଇଯିବ । ଅତଏବ ମୋର ଗତ୍ୟନ୍ତର ନାହିଁ ।" ପ୍ରସୂନ ସ୍ପଷ୍ଟ ଭାବରେ ଜଣାଇଦେଲା ।

ଗୁଇଁରଟି ଯାଇ ଧାପକକୁ ଏ କଥା କହିବାରୁ ଧାପକ ଆଶ୍ୱସ୍ତ ହେଲା ।

ପରଦିନ ସନ୍ଧ୍ୟାବେଳକୁ ଧାପକ ନିଜେ ପ୍ରସୂନ ଘରକୁ ଗଲା । ସେତେବେଳକୁ ମୈନାକର ସ୍ତ୍ରୀ ପ୍ରସୂନକୁ କହୁଥାଏ, "ବାବୁ ! ମୋ ସ୍ୱାମୀକୁ ତୁମେହିଁ ରକ୍ଷା କରିପାରିବ । ସେ କୌଣସି ଅପରାଧ କରିନାହିଁ । ସେ ଦଣ୍ଡିତ ହେଲେ ମୋ ପିଲାପିଲିଙ୍କର ହେବ କ'ଣ ?"

ପ୍ରସୂନ କ'ଣ କହିବ ଶୁଣିବା ପାଇଁ ଧାପକ ଅପେକ୍ଷା କଲା

"ଭଉଣୀ ! ମୋତେ ସେ କଥା କୁହନା । ମୁଁ ଧାପକର ଗୁଇଁର । ତା' ହିତରେ ମୋ ହିତ ।" ପ୍ରସୂନ ଜବାବ ଦେଲା ।

ସ୍ତ୍ରୀ ଲୋକଟି ପ୍ରସୂନକୁ ଗାଳି ଗୁଲଜ କରୁଁ କରୁଁ ସେଠାରୁ ଚାଲିଗଲା । ତା'ପରେ ଧାପକ ପ୍ରସୂନ ପାଖକୁ ଯାଇ ତା'ର ବହୁତ ପ୍ରଶଂସା କଲା । ଏଣିକି ପ୍ରସୂନ ପ୍ରତି ତା'ର ଆଉ କୌଣସି ସନ୍ଦେହ ରହିଲା ନାହିଁ ।

ପରଦିନ ରାଜା ସେ ବିଚାର ହାତକୁ ନେଲେ ।



ବନ୍ଦୀ ମୈନାକ କହିଲା, "ମହାରାଜ ! ମୁଁ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ । ଯାହା ଘଟିଲା, ସେସବୁ ପ୍ରସୂନ ଦେଖିଛନ୍ତି । ତାଙ୍କୁ ଜିଜ୍ଞାସା କରାଯାଉ ।"

ରାଜା ପ୍ରସୂନକୁ ସତ୍ୟ କହିବା ପାଇଁ ନିର୍ଦ୍ଦେଶ ଦେଲେ ।

"ମହାରାଜ ! ଧାପକର ମାଡ଼ରେ ହିଁ ଲୋକଟି ମରିଛି । ମୈନାକ ସହ ସେ ମୃତ୍ୟୁର କୌଣସି ସମ୍ପର୍କ ନାହିଁ ।" ପ୍ରସୂନ କହିଲା ।

ଏହାପରେ ଧାପକ ନିଜ ଅପରାଧ ସ୍ୱୀକାର କଲା । ରାଜା ମୈନାକକୁ ମୁକ୍ତ ଦେଲେ ଓ ଧାପକକୁ ଦଣ୍ଡ ଦେଲେ ।

କାହାଣୀଟି ଶୁଣାଇ ସାରି ବେତାଳ ପ୍ରଶ୍ନ

କଲି : "ରାଜା ! ପ୍ରସୂନ ପ୍ରଥମେ ମିଛ ସାକ୍ଷ୍ୟ ଦେବାକୁ କିମିତି ରାଜି ହୋଇଗଲା ? ପ୍ରଭୁଭକ୍ତି ଯୋଗୁଁ ନା ଧନ ଲାଭ ଲୋଭରେ ? ପୁଣି ସିଏ ହଠାତ୍ ଦରବାରରେ ନିଜ ମତିଗତି ବଦଳାଇ ଭିନ୍ନ କଥା କହିଲା କାହିଁକି ? ସେ ସତ୍ୟ କହିବାରୁ ଘାତକ ବା କାହିଁକି ନିଜ ଅପରାଧ ସ୍ୱୀକାର କଲା ? ଉତ୍ତର ଜାଣି ମଧ୍ୟ ଯଦି ମୋ ସନ୍ଦେହର ଅବସାନ ନ କରିବ, ତେବେ ତୁମ ଶିର ବିଦୀର୍ଣ୍ଣ ହୋଇଯିବ ।"

ବିକ୍ରମାର୍କ ଉତ୍ତର ଦେଲେ : "ପ୍ରସୂନ ନିଜ ବିଚାର ବଦଳାଇ ନ ଥିଲା । ସେ ସତ୍ୟବାଦୀ ଓ ପ୍ରଥମରୁ ହିଁ ସେ ସତ୍ୟ କହିବାକୁ ପ୍ରସ୍ତୁତ ଥିଲା । ତେବେ ସେ ନିଜ ସିଦ୍ଧାନ୍ତ ଆଗରୁ ପ୍ରକଟ କରି ନ ଥିଲା, ଯେହେତୁ ସେ ଥିଲା ବେଶ୍ ବୁଦ୍ଧିମାନ । ସେ ଘାତକ ବିରୁଦ୍ଧରେ ସାକ୍ଷ୍ୟ ଦେବ ବୋଲି ଜଣା ପଡ଼ିଲେ ଘାତକ ଦଣ୍ଡଭୋଗରୁ ବର୍ତ୍ତିବା ପାଇଁ ହୁଏତ ଅନ୍ୟ ବ୍ୟବସ୍ଥା କରିଥାଆନ୍ତା । ନିଜକୁ ସତ୍ୟବାଦୀ ବୋଲି ଜାହିର କରିବାର ଆବଶ୍ୟକତା ପ୍ରସୂନର ନ ଥିଲା । କାରଣ ସମସ୍ତେ ତା' ସ୍ୱଭାବ ଜାଣିଥିଲେ । ମୈନାକର ସ୍ତ୍ରୀ ଆଗରେ ବି ସେ ପ୍ରକୃତରେ କି ସାକ୍ଷ୍ୟ ଦେବ ସେକଥା ଆଗରୁ ଘୋଷଣା କରି ତା'ର କିଛି ଉପକାର କରିପାରି ନ ଥାନ୍ତା । ବାକି ଘାତକ ଅପରାଧ ସ୍ୱୀକାର କରିବା କଥା । ପ୍ରସୂନ ଛଡ଼ା ଅନ୍ୟ ଚାକର ବାକର ମଧ୍ୟ ସତ୍ୟ କଥା ଜାଣିଥିଲେ । ପ୍ରସୂନକୁ ସେ ଅର୍ଥଲୋଭ ଦେଖାଇଥିଲା । ଓ ପ୍ରସୂନ ଉପରେ ଆସ୍ଥା ରଖିଥିଲା । ଯେତେବେଳେ ତା' ସତ୍ତ୍ୱେ ପ୍ରସୂନ ସତ କହିଲା, ଅନ୍ୟ କିଏ ବା କାହିଁକି ତା' ସପକ୍ଷରେ ସାକ୍ଷ୍ୟ ଦେବ ? ତେଣୁ ସେ ଅପରାଧ ସ୍ୱୀକାର କରିନେବା ଉଚିତ ବୋଲି ମନେ କଲା ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ବେତାଳ ପୁଣି ତାଙ୍କ କାନ୍ଧରୁ ଖସି ଯାଇ ଅଦୂରର ବିଶାଳକାୟ ଗଛ ଡାଳରେ ଯାଇ ଝୁଲି ପଡ଼ିଲା ।





# କବି ଓ ଯାଦୁ

ଶୀତଳପୁରର ଜମିଦାର ନଗେନ୍ଦ୍ର ଥିଲେ ଖୁବ୍ କଳାପ୍ରିୟ । ସେ ଚିତ୍ରକର, ସଙ୍ଗୀତକାର ତଥା ନର୍ତ୍ତକ ଓ କବିମାନଙ୍କର ବହୁତ ଆଦର କରୁଥିଲେ । ତାଙ୍କ ଅନ୍ତେ ତାଙ୍କ ପୁଅ ବୀରେନ୍ଦ୍ର ଜମିଦାର ହେଲେ । କଳା ପ୍ରତି ତାଙ୍କର କୌଣସି ଅନୁରାଗ ନ ଥିଲା । ସେ ଥିଲେ ମଲ୍ଲ ବିଦ୍ୟା ପ୍ରତି ଆଗ୍ରହୀ ।

ଏଣିକି କୌଣସି କଳାକାର ଶୀତଳପୁରରେ ଆଉ ପୂର୍ବ ଭଳି ଆଦର ଅଭ୍ୟର୍ଥନା ପାଉ ନ ଥିଲେ । ସାଧାରଣ ଭେଟି ମଧ୍ୟ ସେମାନଙ୍କ ଭାଗ୍ୟରେ ଜୁଟୁ ନ ଥିଲା । ଦରବାରୀ କବି କୁଶାଗ୍ରଙ୍କ ପ୍ରତି ମଧ୍ୟ ବୀରେନ୍ଦ୍ର ଅବହେଳା ଦେଖାଇବାକୁ ଲାଗିଲେ । ଅଥଚ ପୂର୍ବ ଜମିଦାର ନଗେନ୍ଦ୍ର, କୁଶାଗ୍ରଙ୍କୁ ଜାଗିର ଓ ମାସିକ ଭତ୍ତା ଦେବା ସଙ୍ଗେ ସଙ୍ଗେ ଅନେକ ପ୍ରକାରେ ସମ୍ମାନ ଦେଖାଉଥିଲେ । କୁଶାଗ୍ର ମଧ୍ୟ ନଗେନ୍ଦ୍ର ତଥା ତାଙ୍କ ପୂର୍ବ ପୁରୁଷଙ୍କ ରାଜତ୍ୱର ଇତିହାସ ପାଞ୍ଚ ଖଣ୍ଡ ପୋଥିରେ କବିତା ଆକାରରେ ଲେଖି ଥିଲେ । ସେ ପାଣ୍ଡୁଲିପିମାନ ଜମିଦାରଙ୍କ ପାଠାଗାରରେ ସୁରକ୍ଷିତ ଥିଲା । ବର୍ଷକରେ ଥରେ ଗାୟକମାନେ କେତେ ରାଗ ଧରି ତାକୁ ଗାୟନ କରୁଥିଲେ । ଶହ ଶହ ଲୋକ ସେ ଗୀତ ଶୁଣି ଖୁସି ହେଉଥିଲେ ।

ହଠାତ୍ ଦିନେ ନୂଆ ଜମିଦାର ବୀରେନ୍ଦ୍ର କୁଶାଗ୍ରଙ୍କୁ ଡକାଇ କହିଲେ, "କବି ମହୋଦୟ ! ମୋ ବାପା ଆପଣଙ୍କୁ ଦରବାରୀ କବି ରୂପେ ନିଯୁକ୍ତ କରିଥିଲେ । ତେଣୁ ମୁଁ ଆପଣଙ୍କୁ ହଠାତ୍ ବିଦାୟ କରିଦେବାକୁ ଚାହେଁ ନାହିଁ । ଆପଣଙ୍କ ଆସନ ବଜାୟ ରଖିବା ପାଇଁ ଆପଣଙ୍କୁ ଗୋଟିଏ ସୁଯୋଗ ଦେଉଛି । ଆପଣ ମୋ

ଏ. ସି. ସରକାର, ଯାଦୁକର



ଜୀବନକୁ ଆଧାର କରି ଏକ ନୂଆ କବିତା ଗ୍ରନ୍ଥ ରଚନା କରନ୍ତୁ । ଯଦି କରି ନ ପାରିବେ ବିଦାୟ ହୋଇ ଯାଆନ୍ତୁ ।"

ଏ ପ୍ରସ୍ତାବ କବି କୁଶାଗ୍ରଙ୍କୁ ଅପମାନଜନକ ମନେ ହେଲା । ତେବେ ସେ କହିଲେ, "ବେଶ୍ କଥା । ମୁଁ ଆପଣଙ୍କ ପରମ୍ପରା ଉପରେ ପୂର୍ବରୁ ଲେଖିଥିବା ପାଞ୍ଚ ଖଣ୍ଡ ବହି ସହିତ ଷଷ୍ଠ ଖଣ୍ଡ ଯୋଗ କରିବି । ମୁଁ ସେ ପାଞ୍ଚ ଖଣ୍ଡ ଘରକୁ ନେଇଯାଏଁ । ତାର ଛନ୍ଦ ଓ କ୍ରମ ସହ ମିଳାଇ ଷଷ୍ଠ ଖଣ୍ଡ ରଚନା କରିବି ।"

ବୀରେନ୍ଦ୍ର ସେଥିରେ ସମ୍ମତ ହେଲେ । କୁଶାଗ୍ର ପାଣ୍ଡୁଲିପି ପାଞ୍ଚ ଖଣ୍ଡ ଘରକୁ ନେଇଗଲେ ଓ ଷଷ୍ଠ ଖଣ୍ଡ ରଚନାରେ ମନ ଦେଲେ । ମାସେ ଭିତରେ ଅଧାଅଧି ଲେଖି ବୀରେନ୍ଦ୍ରଙ୍କ ଦରବାରରେ ସଭାସଦ୍‌ମାନଙ୍କୁ ପଢ଼ି ଶୁଣାଇଲେ । ସମସ୍ତେ ତାଙ୍କ ରଚନା-ଚାତୁରୀର ପ୍ରଶଂସା କଲେ । କୁଶାଗ୍ର ପ୍ରସନ୍ନ ହେଲେ ଓ ଷଷ୍ଠ ଖଣ୍ଡ କୌଣସି ପ୍ରକାରେ ଶେଷ କରିବାରେ ମନୋନିବେଶ କଲେ ।

କିନ୍ତୁ କୁଶାଗ୍ରଙ୍କୁ ଅନୁସରଣ କରୁଥିଲା ଦୁର୍ଭାଗ୍ୟ । ଦିନେ ରାତିରେ ହଠାତ୍ ତାଙ୍କ ଘରେ ନିଆଁ ଲାଗିଗଲା । ନବଲିଖିତ ଷଷ୍ଠ ଖଣ୍ଡ ସହିତ ପ୍ରଥମ ପାଞ୍ଚ ଖଣ୍ଡ ପାଣ୍ଡୁଲିପି ମଧ୍ୟ ପୋଡ଼ି ପାଉଁଶ ହୋଇଗଲା । କୁଶାଗ୍ରଙ୍କ କ୍ଷୋଭର ସୀମା ରହିଲା ନାହିଁ ।

ଅଗ୍ନିକାଣ୍ଡ କଥା ଦରବାରରେ ପହଞ୍ଚିବା ମାତ୍ରେ ଜମିଦାର କୁଶାଗ୍ରଙ୍କୁ ଡକାଇ ପଠାଇଲେ ।

"ଯେଉଁ ପାଞ୍ଚ ଖଣ୍ଡ ବହି ପୋଡ଼ିଗଲା, ତାହାର ପୁନରୁଦ୍ଧାର ହେବ କିପରି ?" ବୀରେନ୍ଦ୍ର ଗର୍ଜନ କରି ପଚାରିଲେ ।

"ଆଜ୍ଞା ! ସେ ଗ୍ରନ୍ଥଗୁଡ଼ିକ ମୁଁ ରଚନା କରିଥିଲି । ମୁଁ ପୁଣି ତାକୁ ଲେଖିବି ଏବଂ ପୂର୍ବାପେକ୍ଷା ଆହୁରି ସରସ କରି ଲେଖିବି ।" କବି ଉତ୍ତର ଦେଲେ ।

"ଅସମ୍ଭବ । ପୁଣି ଥରେ ପାଞ୍ଚ ଖଣ୍ଡ ଯାକ ବହି ତମେ ଲେଖି ପାରିବ, ଏକଥା ମୁଁ ବିଶ୍ୱାସ କରି ପାରିବି ନାହିଁ । ତମ ନିଜ ଅସାବଧାନତା ହେତୁ ସେ ପାଣ୍ଡୁଲିପିମାନ ପୋଡ଼ିଗଲା । ତେଣୁ ତମକୁ ଦଣ୍ଡିତ ହେବାକୁ ପଡ଼ିବ । ତେବେ କି ପ୍ରକାର ଦଣ୍ଡ ତମ ପାଇଁ ଠିକ୍ ହେବ ସେକଥା

ମୁଁ ଦୁଇ ତିନ ଦିନ ଭିତରେ ସ୍ଥିର କରିବି । ଏବେ ଯାଇ ପାର ।" ବୀରେନ୍ଦ୍ର କଡ଼ା ସ୍ୱରରେ କହିଲେ ।

କୁଶାଗ୍ର ବିବ୍ରତ ଚିତ୍ତରେ ଘରକୁ ଫେରିଲେ । ଆସି ଦେଖନ୍ତି ତ ତାଙ୍କ ବନ୍ଧୁ ଜାଦୁକର ଶଙ୍କର ତାଙ୍କୁ ଅପେକ୍ଷା କରିଛି । ଶଙ୍କର ବିଦେଶ ଭ୍ରମଣରୁ ସେହି ଦିନ ଫେରିଥାଏ ।

"ଘର ଗଲା ତ ଗଲା ନୂଆ ଘର ହେବ । ତମେ ଏତେ ବିବ୍ରତ ଦିଶୁଛ କଆଁ ?" ଶଙ୍କର ଆଶ୍ୱାସନା ଦେଇ କହିଲା ।

କୁଶାଗ୍ର ସବୁ କଥା କହିଗଲେ । ଶଙ୍କର କହିଲା, "ଆଚ୍ଛା ! ଏପରି କଥା ! ମୁଁ ଗୋଟାଏ ଉପାୟ ବତାଉଛି । ତମେ ମୋ ପରାମର୍ଶ ଅନୁସାରେ କାମ କର । ସବୁ ଠିକ୍ ହୋଇଯିବ ।"

ଶଙ୍କରର ପରାମର୍ଶ କୁଶାଗ୍ର ମନ ଦେଇ ଶୁଣିଲେ । ପରଦିନ ସକାଳେ ଦରବାରକୁ ଯାଇ ବୀରେନ୍ଦ୍ରଙ୍କୁ ସେ ଏକାନ୍ତରେ କହିଲେ, "ଆଜ୍ଞା ! କାଗଜ ପୋଡ଼ିଗଲେ ସୁଦ୍ଧା ପାଉଁଶରୁ ଅକ୍ଷରତକ ପଢ଼ିବାର ଏକ ଗୋପନ ବିଦ୍ୟା ମୋତେ ଜଣା ଅଛି । ଏକଥା ସମସ୍ତଙ୍କ ଆଗରେ ମୁଁ ଗତକାଲି କହି ନ ଥିଲି । ‘ପୋଡ଼ି ଯାଇଥିବା ସବୁ ପାଣ୍ଡୁଲିପିର ଭସ୍ମାବଶେଷ ମୁଁ ସାବଧାନରେ ରଖିଛି । ମନଧ୍ୟାନ ଦେଇ ସେସବୁର ଭାଷା ଉଦ୍ଧାର୍ କରି ମୁଁ ନୂଆ କାଗଜରେ ଲେଖି ପାରିବି ।"

"ତମେ ସେ ବିଦ୍ୟା ଜାଣିଛ ବୋଲି ପ୍ରମାଣ କ'ଣ ?" ବୀରେନ୍ଦ୍ର ପଚାରିଲେ ।

"ଆପଣଙ୍କ ଆଗରେ ମୋ ଶକ୍ତିର ପରୀକ୍ଷା ମୁଁ ଦେଇପାରେ ।" କୁଶାଗ୍ର ଜବାବ ଦେଲେ ।



"ବେଶ୍ କଥା । ତୁମକୁ ସେଭଳି ବିଦ୍ୟା ଜଣା ଅଛି ବୋଲି ଯଦି ମୋର ହୃଦ୍‌ବୋଧ ହେବ, ତେବେ ତମକୁ ଦଣ୍ଡରୁ ଅବ୍ୟାହତି ଦେବା ସଙ୍ଗେ ସଙ୍ଗେ ପୁନର୍ବାର ଆମ ବଂଶ ଇତିହାସ ରଚନା କରିବା ବାବଦରେ ଉପଯୁକ୍ତ ପାରିଶ୍ରମିକ ଦେବି ।" ବୀରେନ୍ଦ୍ର ପ୍ରତିଶ୍ରୁତି ଦେଲେ ।

"ଆପଣଙ୍କ ନିର୍ଦ୍ଦେଶ ଶିରୋଧାର୍ଯ୍ୟ । ହେଇଟି ଗୋଟିଏ କାଗଜ ବିଡ଼ା । ହେଇଟି ପେନ୍‌ସିଲ୍ । ଆପଣ ଉପର କାଗଜ ଉପରେ କିଛି ଲେଖନ୍ତୁ । ମୋତେ ବା ଆଉ କାହାକୁ ନ ଦେଖାଇ ଆପଣ ତା'ପରେ କାଗଜଟିକୁ ଚିରି ଜଳାଇ ଦିଅନ୍ତୁ ଓ ମୋ ହାତରେ କେବଳ ପାଉଁଶତକ ଦିଅନ୍ତୁ । ମୁଁ ସେ ପାଉଁଶତକ ଧରି ଗୋଟିଏ କୋଠରି ଭିତରେ କିଛି ସମୟ ରହି କହିଦେବି ଆପଣ କ'ଣ ଲେଖିଥିଲେ ।" କୁଶାଗ୍ର କହିଲେ ।

କୁଶାଗ୍ର ଶଙ୍କର ଶିଖାଇଥିବା ଉପାୟରେ କୋଠରି ଭିତରୁ ଆସି ଆଉ ଖଣ୍ଡିଏ କାଗଜରେ କିଛି ଲେଖି ବୀରେନ୍ଦ୍ରଙ୍କୁ ଦେଖାଇ ଦେଲେ । ଦେଖିବା ବେଳକୁ ବୀରେନ୍ଦ୍ର ବାସ୍ତବିକ ତାହାହିଁ ଲେଖି ପ୍ରଥମ କାଗଜ ଜଳାଇ ଦେଇଥିଲେ । ବୀରେନ୍ଦ୍ରଙ୍କ ବିସ୍ମୟର ସୀମା ରହିଲା ନାହିଁ । ଏକଥା ସେ ତାଙ୍କ ପାତ୍ରମିତ୍ରଙ୍କୁ କହିଲେ । କୁଶାଗ୍ରଙ୍କୁ ମୋଟା ମାସିକ ଭତ୍ତା ଦେଲେ । କୁଶାଗ୍ର ଦୁଇବର୍ଷ ଭିତରେ ଜଳି ଯାଇଥିବା ପାଞ୍ଚ ପାଣ୍ଡୁଲିପି ସହ ଷଷ୍ଠ ପାଣ୍ଡୁଲିପି ମଧ୍ୟ ସଂପୂର୍ଣ୍ଣ କରି ବୀରେନ୍ଦ୍ରଙ୍କ ହାତରେ ସମର୍ପି ଦେଲେ ।

ଏଇଟା ଥିଲା ଏକ ସହଜ ଇନ୍ଦ୍ରଜାଲ । ଶଙ୍କର କୁଶାଗ୍ରଙ୍କୁ ଦେଇଥିଲେ ଏକ ବିଶେଷ ଧରଣର କାଗଜ ବିଡ଼ା । ସେ ବିଡ଼ାର ତିନପ୍ରସ୍ଥ କାଗଜ ତଳେ ଖଣ୍ଡିଏ ସୂକ୍ଷ୍ମ କାର୍ବନ୍ କାଗଜ ରହିଥିଲା । ବୀରେନ୍ଦ୍ର ପେନ୍‌ସିଲ୍‌ରେ କାଗଜ ବିଡ଼ା ଉପରେ ଯାହା ଲେଖିଥିଲେ, ତାହା ଫୁଟି ବିଡ଼ାର ଚତୁର୍ଥ ପ୍ରସ୍ଥ ଉପରେ ମଧ୍ୟ କାରବନ ହେତୁ ଫୁଟି ଉଠିଥିଲା । କୁଶାଗ୍ର ଏକୁଟିଆ କୋଠରି ଭିତରକୁ ଯାଇ ଚତୁର୍ଥ କାଗଜ ଖଣ୍ଡରୁ ସେ ଲେଖା ପଢ଼ି ନେଇ ବାହାରକୁ ଆସି ତାହା ଆଉ ଥରେ ଲେଖି ଦେଖାଇ ଦେଇ ପାରିଲେ ।





# ବକ୍‌ସିସ୍

ଲୋକମାନେ କୁହନ୍ତି ଯେ ନ୍ୟାୟପୁର ରାଜ୍ୟର ରାଜାଙ୍କ ଶାସନରେ ଧର୍ମ ଓ ନ୍ୟାୟ ଉଭୟେ ପାଳିତ ହେଉଥିଲେ । ରାଜା ଧର୍ମହାନିରୁ ରକ୍ଷା ପାଇବା ପାଇଁ ଅନେକ ନିୟମ ତିଆରି କରିଥିଲେ ଓ ସେସବୁ ଯଥାରୀତି ପାଳନ କରୁଥିଲେ । ତା'ଛଡ଼ା ସେ ବିଚାରରେ କୌଣସି ପକ୍ଷପାତିତାକୁ ପ୍ରଶ୍ରୟ ଦେଉ ନ ଥିଲେ ।

ଦେଶରେ ଥରେ ଏକ ବିଚିତ୍ର ଘଟଣା ଘଟିଲା । ଚନ୍ଦ୍ରମୁଖ ନାମକ ଜଣେ ନ୍ୟାୟାଧିକାରୀ ଲମ୍ପଟ ନାମକ ଏକ ବ୍ୟକ୍ତିଠାରୁ ଲାଞ୍ଚ ନେଇ ତା' ସପକ୍ଷରେ ରାୟ ଦେଲା । ତଦ୍ୱାରା ରମଣ ନାମକ ଏକ ବ୍ୟକ୍ତି ରାଜାଙ୍କ ପାଖରେ ଫେରାଦ ହେଲା ।

ରାଜା ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ । ଦେଶରେ ଅନେକ ଚୋରି, ହତ୍ୟା, ଠକାମୀ ଓ ଅନ୍ୟାନ୍ୟ ଅପରାଧ ହେଉଛି । କିନ୍ତୁ ଆଜି ସୁଧା କେହି ଲାଞ୍ଚ ନେଇ ଅନ୍ୟାୟ ରାୟ ଦେଇ ନ ଥିଲା ।

ପ୍ରକୃତ ଘଟଣା ହେଉଛି, ଲମ୍ପଟ ନାମକ ବ୍ୟବସାୟୀ ନିଜର ଗୋଦାମ ତିଆରି କରିବା ପାଇଁ ଏକ ବିସ୍ତୃତ ଜମି କିଣିଲା ଓ ସେଠାରେ ଘର ତିଆରି ଆରମ୍ଭ କଲା । କିନ୍ତୁ ସେହି ଜମିର ମଧ୍ୟ ଭାଗରେ ରମଣ ନାମକ ଏକ ବ୍ୟକ୍ତିର କିଛି ଜମି ଥିଲା । ରମଣ ଥିଲା ଗରିବ । ତଥାପି ସେ ନିଜର ଜମି ଖଣ୍ଡିକ ବିକିବାକୁ ଚାହୁଁ ନ ଥିଲା । ସେ ଖଣ୍ଡିକ ଥିଲା ତା'ର ପୂର୍ବପୁରୁଷ ଅମଳର ଏବଂ ତା'ର ଏଇ ବିଶ୍ୱାସ ଥିଲା ଯେ ପିତୃପୁରୁଷଙ୍କ ଆତ୍ମା ସେହିଠାରେ ହିଁ ରହୁଥିଲେ ।

ରମଣ ଯେତେବେଳେ ସପରିବାରେ ତୀର୍ଥାଟନରେ ଯାଇଥିଲା, ସେତିକିବେଳେ ଲମ୍ପଟ



ସେହି ଜମି ଉପରେ ଗୋଦାମ ଘର ତିଆରି ଆରମ୍ଭ କରିଦେଲା । ରମଣ ତୀର୍ଥାଟନରୁ ଫେରି ପ୍ରତିବାଦ କରିବାରୁ ଲମ୍ପଟ ଧନର ପ୍ରଲୋଭନ ଦେଖାଇଲା । କିନ୍ତୁ ରମଣ ପଚାରିଲା, "ଦେଖ ଭାଇ, ତୁମ ଧନର ପ୍ରଲୋଭନରେ ପଡ଼ି ମୁଁ କ'ଣ ମୋ ପିତୃପୁରୁଷଙ୍କୁ ନିରାଶ୍ରୟ କରିବି ?"

"ଯଦି ତୁମେ ଧନ ଚାହୁଁ ନ, ତେବେ କୁହାଯିବ ସେଇଟା ତୁମର ଦୁର୍ଭାଗ୍ୟ । ମୁଁ ଗୋଦାମ ତିଆରି ବନ୍ଦ କରି ପାରିବି ନାହିଁ । ତମର ଯାହା ଇଚ୍ଛା କର ।" ଲମ୍ପଟ ଧମକ ଦେଲା ।

ରମଣ ନ୍ୟାୟାଧିକାରୀ ପାଖକୁ ଯାଇ ଅଭିଯୋଗ କଲା । ସେ ତାକୁ ଆଶ୍ୱାସନା ଦେଇ କହିଲେ ଯେ ଘଟଣାର ଯଥାର୍ଥ ତଦନ୍ତ ହେବ । ଆପାତତଃ ଘର ତିଆରି ପ୍ରସ୍ତାବ ସ୍ଥଗିତ ରଖିବାକୁ ନ୍ୟାୟାଧିକାରୀ ଲମ୍ପଟକୁ ଆଦେଶ ଦେଲେ ।

ଲମ୍ପଟ ଡରିଗଲା । ସେ କେବେ ଭାବି ନ ଥିଲା ଯେ ଜଣେ ଗରିବ ଲୋକ ରାହୁ ପରି ତା' ସମ୍ମାନକୁ ଗ୍ରାସ କରିବ ଓ ତା' କାର୍ଯ୍ୟର ପ୍ରତିବନ୍ଧକ ହେବ । ଯଦି ଶୁଣାଣି ତା' ବିରୁଦ୍ଧରେ ହୁଏ ତ ତାକୁ ବହୁତ କ୍ଷତି ସହିବାକୁ ପଡ଼ିବ । ସେଥିପାଇଁ ସେ ନ୍ୟାୟାଧିକାରୀ ଚନ୍ଦ୍ରମୁଖ ସହିତ ଏକାନ୍ତରେ ଦେଖା କରି ତା' ସଙ୍କଟ କଥା ଜଣାଇଲା ।

ସେ କହିଲେ, "ରମଣର ଅଭିଯୋଗ ଯୁକ୍ତିଯୁକ୍ତ । ସେ ତା' ଜମି ବିକ୍ରି କରିବାକୁ ଚାହୁଁ ନା । ଏପରି କ୍ଷେତ୍ରରେ ମୁଁ କିଛି କରି ପାରିବି ନାହିଁ । ମୁଁ ନିୟମ ବିରୁଦ୍ଧରେ ଯାଇ ପାରିବି ନାହିଁ ।"

ତା'ପରେ କ'ଣ ହେଲା କେହି ଜାଣନ୍ତି ନାହିଁ । କିନ୍ତୁ ବର୍ଷର ବେଳକୁ ସମସ୍ତେ ଦେଖିଲେ ଯେ ରମଣର କାଗଜପତ୍ରରେ ଲେଖା ହୋଇଛି, "ରମଣର ପୂର୍ବ ପୁରୁଷମାନେ ଲମ୍ପଟର ପୂର୍ବପୁରୁଷମାନଙ୍କଠାରୁ ଏହି ଜମି ବିନା ମୂଲ୍ୟରେ ନେଇଥିଲେ । ତେଣୁ ଲମ୍ପଟର କୌଣସି ବଂଶଜ ଯେ କୌଣସି ସମୟରେ ପୁଣି ଯଥା ମୂଲ୍ୟ ଦେଇ ସେଇଟି ନିଜ ଅକ୍ତିଆରକୁ ଆଣି ପାରିବେ ।

ରମଣ କାଗଜଟି ଦେଖି ଆଶ୍ଚର୍ଯ୍ୟ ହେଲା । ଅନ୍ୟ ଲୋକମାନଙ୍କୁ ଡାକି କାଗଜଟିକୁ ପଢ଼ାଇଲା । ସମସ୍ତେ ଏକ କଥାହିଁ କହିଲେ ।

ରମଣ ଲମ୍ପଟକୁ କହିଲା, "ଯଦି ଜମି ଆପଣଙ୍କର, ତେବେ ସେଠାରେ ମୋର ପିତୃପୁରୁଷ ରହିଛନ୍ତି କାହିଁକି ?" ଏକଥା କହି ଲମ୍ପଟ ଯାହା ମୂଲ୍ୟ ଦେଇଥିଲା ତାକୁ ନେଇ ସେ ଘରକୁ ଫେରି ଆସିଲା । କିନ୍ତୁ ପରଦିନହିଁ ରମଣ ଜାଣି ପାରିଲା ଯେ ତା' ପ୍ରତି ଅନ୍ୟାୟ କରା ହୋଇଛି । ଜଣେ ଲୋକ ଯିଏ ନ୍ୟାୟାଧିକାରୀ ଘରେ କାମ କରୁଥିଲା ସେ ଲମ୍ପଟର ଟଙ୍କା ଘୁସ୍ ଦେବା କଥା ଓ ସେମାନଙ୍କ ସବୁ କାରସାଦି ବିଷୟ ରମଣକୁ କହିଦେଲା । ରମଣ କ୍ରୁଦ୍ଧ ଓ ସନ୍ତପ୍ତ ହେଲା । ସେ ରାଜାଙ୍କ ପାଖକୁ ଯାଇ ଅଭିଯୋଗ ପେଶ୍ କଲା ।

ରାଜା ବିଶ୍ୱସ୍ତ ସୂତ୍ରରୁ ଖବର ପାଇଲେ ଯେ ନ୍ୟାୟାଧିକାରୀ ଘରେ ଦଶ ହଜାର ଟଙ୍କା ଅଛି । ରାଜା ତାକୁ ଡାକି ଧମକ ଦେବାରୁ ସେ ସବୁ କଥା ମାନିଗଲା ।

ରାଜା ମହୀପାଳ କ୍ରୋଧାନ୍ୱିତ ହୋଇ ନ୍ୟାୟାଧିକାରୀ ଚନ୍ଦ୍ରମୁଖକୁ କାରଣ ପଚାରନ୍ତେ ସେ କହିଲା, "ମୋର ଝିଅ ପାଇଁ ଏକ ସୁନ୍ଦର ବିବାହ ପ୍ରସ୍ତାବ ଆସିଥିଲା । କିନ୍ତୁ ଯୌତୁକ ପାଇଁ ଦଶ ହଜାର ଟଙ୍କା ଆବଶ୍ୟକ ଥିଲା ।




ମୁଁ କପରି ଏତେ ଟଙ୍କା ଦେଇ ପାରନ୍ତି ? ତେଣୁ ମୁଁ ଏହି ନୀଚ କାର୍ଯ୍ୟ କରିଛି । କିନ୍ତୁ ଫଳରେ ମୋର ଲାଭ ହେବା ସଙ୍ଗେ ସଙ୍ଗେ ରମଣକୁ ବି ଟଙ୍କା ମିଳିଲା । ଲମ୍ପଟର ବ୍ୟବସାୟର ମଧ୍ୟ ଉନ୍ନତି ହେବ । କ୍ଷତି କ'ଣ ହେଲା ?"

ଏକଥା ଶୁଣି ରାଜା ମହୀପାଳ ଲମ୍ପଟକୁ ଡାକି କହିଲେ, "ପ୍ରତ୍ୟେକ ମନୁଷ୍ୟ ଭିତରେ କିଛି ନା କିଛି ଦୁର୍ବଳତା ରହିଛି । ସ୍ୱଭାବତଃ ଚନ୍ଦ୍ରମୁଖ ଖୁବ୍ ଭଲ ଲୋକ । ତା' ଦୁର୍ବଳତା ଜାଣି ତୁମେ ତା'ଦ୍ୱାରା ଏହି ଅନ୍ୟାୟ କାର୍ଯ୍ୟ କରାଇଲ । ଏହାର ଜବାବ ତୁମେ କ'ଣ ଦେବ ?"

"ମହାରାଜ ! ମୁଁ କାହାର ଦୁର୍ବଳତାର

ସୁଯୋଗ ନେଇ ନାହିଁ । ଚନ୍ଦ୍ରମୁଖ ମୋତେ ଧନ ମାଗିଲ; କାରଣ ତା'ର ଦରକାର ଥିଲ । ଯଦି ମୁଁ ନ ଦିଏ ତ ମୋର କ୍ଷତି ହେବ । ସେଥିପାଇଁ ମୁଁ ଧନ ଦେବାକୁ ସ୍ୱୀକାର କଲି ।" ଲମ୍ପଟ ଉତ୍ତର ଦେଲ ।

ମହୀପାଳ ବଡ଼ ଦ୍ୱନ୍ଦ୍ୱରେ ପଡ଼ିଲେ । ନୂଆ ପ୍ରକାରର ଏକ ଅପରାଧ ସେ ଦେଶରେ ହୋଇଛି । ତେଣୁ ଦଣ୍ଡ ଦେବା ପୂର୍ବରୁ ସେ କାରଣ ନିର୍ଣ୍ଣୟ କରିବାକୁ ଦୃଢ଼ ପରିକର ହେଲେ ।

କିନ୍ତୁ ଏହି ସମସ୍ୟା ସହଜରେ ସମାଧାନ ହେବା କଥା ନୁହେଁ । ପ୍ରଥମେ ଗଛ ନା ପ୍ରଥମେ ମଞ୍ଜି ଏହା ଥିଲ ସେହି ଧରଣର ସମସ୍ୟା । ରାଜା ଚନ୍ଦ୍ରମୁଖର ଏହି ଅପରାଧ ପାଇଁ କିଛି ପ୍ରତିକାର କରି ପାରିଲେ ନାହିଁ ।

ସେହି ଦିନଠାରୁ ଏହିପରି ଅପରାଧର ସଂଖ୍ୟା ବଢ଼ିବାକୁ ଲଗିଲ । ତାହାର ନାମ ହେଲ "ବକ୍‌ସିସ୍‌" । ଏହି ଅପରାଧରେ ପ୍ରଥମେ ଭୁଲ୍ ବକ୍‌ସିସ୍ ଦେବାବାଲର ନା ନେବାବାଲର ତାହାହିଁ ହେଲ ପ୍ରଶ୍ନ । କିନ୍ତୁ ଏହାର ଉତ୍ତର ମିଳିବା ସହଜ ହୋଇନାହିଁ । କାରଣ ପରିସ୍ଥିତି ଅନୁସାରେ ଉତ୍ତର ମଧ୍ୟ ବଦଳୁଛି । କିନ୍ତୁ ଅପରାଧୀମାନଙ୍କ ପାଇଁ କୌଣସି ଦଣ୍ଡର ବ୍ୟବସ୍ଥା କରାଯାଇ ନାହିଁ । କାରଣ ଅନ୍ୟ ଅପରାଧର ଯେଉଁ ଶକ୍ତି ନାହିଁ, ଏହାର ତାହା ଅଛି । ତାହା ହେଉଛି, ଏହା ନ୍ୟାୟର ନିୟମକୁ ବଦଳାଇ ଦେଇ ପାରେ ।

ତେବେ ଗୋଟାଏ କଥା ସ୍ପଷ୍ଟ । ଦେବାବାଲା ଓ ନେବାବଲା ଉଭୟେ ଏହା ଫଳରେ ଗ୍ଲାନି ବୋଧ କରନ୍ତି । ଯେତକ ଲାଭ ମିଳେ, ତାହା ତୁଳନାରେ କାଳକ୍ରମେ ବହୁଗୁଣ ଅଧିକ ମାନସିକ ପୀଡ଼ା ଭୋଗ କରିବାକୁ ହୁଏ । ସୁତରାଂ ଏ କାରବାରରେ ଯେ କିଛି ଗଲ୍‌ତି ଜରୁର୍ ରହିଛି, ଏତିକ ସମସ୍ତେ ବୁଝନ୍ତି ।



# ନୂତନ ଆଗ୍ନେୟଗିରି

ଆଧୁନିକ କାଳରେ ନୂତନ ଆଗ୍ନେୟଗିରିର ଉଦ୍ଭବ ଖୁବ୍ ବିରଳ ଘଟଣା । ଚଳିତ ଶତାବ୍ଦୀରେ ମେକ୍ସିକୋରେ ୧୯୪୪ରେ ଏକ ନୂଆ ଆଗ୍ନେୟଗିରି ଜନ୍ମଲାଭ କରିଥିଲା(୧୯୭୫ ଏପ୍ରିଲ୍ ସଂଖ୍ୟା ଦେଖ ।) ଗତବର୍ଷ ରୁଷିଆ ଅନ୍ତର୍ଭୁକ୍ତ ଏକ ଇଲାକାରେ ଗୁଡ଼ିଏ ଆଗ୍ନେୟ ପର୍ବତ ଏକାବେଳେକେ ସୃଷ୍ଟ ହେଲେ । ତେବେ ବୈଜ୍ଞାନିକମାନେ ପୂର୍ବରୁ ଏ ଉଦ୍‌ଗୀରଣର ପ୍ରକୃତି ଓ ସମୟ ସମ୍ପର୍କରେ ଠିକଣା ଜାଣି ପାରିଥିଲେ ଓ ସେ ଘଟଣା ପର୍ଯ୍ୟବେକ୍ଷଣ କରିବା ପାଇଁ ପ୍ରସ୍ତୁତ ହୋଇ ରହିଥିଲେ ।






# ସୁନାଟଙ୍କା

ଆଳସୁଆମୀରେ ଜଗପତିକୁ ବଳିଯିବା ଭଳି ଲୋକ କେହି ନ ଥିଲେ । ସ୍ତ୍ରୀ, ପିଲାପିଲି କେମିତି ଚଳିବେ, ସେ ପ୍ରତି ତା'ର ଖାତିର୍ ନ ଥିଲା । ତା' ପୂର୍ବପୁରୁଷ ଥିଲେ ସମ୍ଭ୍ରାନ୍ତ । ସେହି ଗର୍ବକୁ ଆଦରି ସେ ଧନ ବିତାଇ ଦେଉଥିଲା । ତେବେ ଯେତିକି ଧନ ଯାଉଥାଏ, ସେତିକି ଋଣ ଭାର ବଢ଼ୁଥାଏ । କ୍ରମେ ମହାଜନମାନେ ତାକୁ ଋଣ ଦେବା ବନ୍ଦ କରି କିପରି ଋଣତକ ଆଦାୟ କରିବେ, ସେଇ ଚିନ୍ତାରେ ପଡ଼ିଲେ । ସେମାନଙ୍କ ହାବୁଡ଼ରେ ନ ପଡ଼ିବା ପାଇଁ ଜଗପତି ବଡ଼ି ସକାଳୁ ବାହାରି ଯାଏ । ରାତି ହେଲେ ଘରକୁ ଲେଉଟେ ।

ମହାଜନମାନେ ତା' ଘରକୁ ଆସି ତାକୁ ନ ପାଇ ତା' ସ୍ତ୍ରୀକୁ ଗାଳିଗୁଲଜ କରି ଚାଲିଯା'ନ୍ତି । ଦିନେ ଅତ୍ୟନ୍ତ ବିରକ୍ତ ହୋଇ ସ୍ତ୍ରୀ ଜଗପତି ଘରକୁ ଫେରିବା ଉଂଷରୁ କହିଲା, "ତମେ ଧନ ସାରି ବେକାର ଏଣେ ତେଣେ ବୁଲି ବୁଲି ରାତିରେ ଘରକୁ ଫେରିବ, ଆଉ ମୁଁ ଘରେ ଥାଇ ଜଣ ଜଣ ମହାଜନଙ୍କଠାରୁ ଗାଳିଗୁଲଜ ଶୁଣୁଥିବି! ଏପରି ଆଉ ଚଳିବ ନାହିଁ । କାଲି ସକାଳେ ସବୁ ମହାଜନ ଏକତ୍ର ଆସିବେ ବୋଲି କହି ଯାଇଛନ୍ତି । ତମେ କୁଆଡ଼େ ନ ଯାଇ ଘରେ ରହିଥିବ ।"

ଏକଥା ଶୁଣି ରାତିରେ ଜଗପତିକୁ ନିଦ ହେଲା ନାହିଁ । ଯଦି ମହାଜନମାନେ ମିଳି ତାକୁ ବାଡ଼େଇବେ, ତେବେ ତା' ପୂର୍ବପୁରୁଷର ଇଜ୍ଜତ ରହିବ କି ? ଜୀବନ ପ୍ରତି ତା'ର ବିତୃଷ୍ଣା ଆସିଗଲା । ସେ ଧୀରେ ଧୀରେ ଉଠିଯାଇ ଗାଁ ବାହାରେ ବରଗଛ ମୂଳରେ ଥିବା ଅତି ପୁରୁଣା କୂଅଟି ପାଖରେ ଯାଇ ପହଞ୍ଚିଲା । ସ୍ଥିର କଲା କୂଅକୁ କୁଦିପଡ଼ି ଆତ୍ମହତ୍ୟା କରିବ ।

ସେ ଠିକ୍ ଡେଇଁ ପଡ଼ିବାକୁ ଯାଉଛି, କୂଅ ଭିତରୁ ପିଶାଚଟିଏ ବାହାରି ଆସି ତାକୁ ଆପାଦମସ୍ତକ ନିରୀକ୍ଷଣ କରି କହିଲା, "ପାଗଳ ନା

କ'ଣ ! ରାତି ଅଧରେ କ'ଣ ଏଇ ସବୁ ଜାଗାରେ ଆସି ବୁଲନ୍ତି ? କଥା କ'ଣ ?"

ଜଗପତି ପିଶାଚକୁ ତା'ର ଦୁଃଖ କଥା ଶୁଣାଇ ସାରି କହିଲା, "ଆଉ ଜୀଇଁ ରହିବା ମୋ ପକ୍ଷରେ ସମ୍ଭବ ନୁହେଁ । ମୁଁ ମରିବି ହିଁ ମରିବି । ବାଧା ଦିଅନା ।"

ପିଶାଚ ଉତ୍କଣ୍ଠିତ ସ୍ୱରରେ କହିଲା, "ଆରେ ଓଲୁ ! ସେଥିରେ କୌଣସି ସମସ୍ୟାର ସମାଧାନ ହେବ ନାହିଁ । ମୁଁ ବି ଦିନେ ଏ କୂଅକୁ ଡେଇଁ ପଡ଼ିଥିଲି ଓ ଫଳରେ ପିଶାଚ ବନିଛି । ମୁଁ ମରିବା ପରେ କ'ଣ ମୋ ପରିବାରର ଦୁଃଖ ଗଲା ? ନା । ଅଥଚ ସବୁ ଦେଖି କିଛି କରି ନ ପାରି ମୁଁ ଅସହ୍ୟ ଯନ୍ତ୍ରଣା ପାଉଛି । ଯା' ଘରକୁ ପଳା ।"

"ସକାଳ ହେବା ମାତ୍ରେ ମହାଜନମାନେ ଆସି ମୋତେ ବାଡ଼ିଆ ପିଟା କରିବେ ଯେ !" ଜଗପତି ବିକଳ ହୋଇ କହିଲା ।

ପିଶାଚ ତତ୍କ୍ଷଣାତ୍ କୂଅ ଭିତରକୁ ପଶିଯାଇ ଟେକାଏ ସୁନା ଧରି ଉଠି ଆସି ଜଗପତିକୁ ତାହା ଧରାଇ ଦେଇ କହିଲା, "ଏଇଥିରେ ତୋ କରଜତକ ସୁଝି ଦେ । ଭବିଷ୍ୟତରେ ଆଉ ଆତ୍ମହତ୍ୟା କଥା ଚିନ୍ତା କରିବୁ ନାହିଁ ।"

ସୁନାଟେକା ଧରି ଜଗପତି ଆନନ୍ଦରେ ଘରକୁ ଫେରିଲା ଓ ସବୁକଥା ସ୍ତ୍ରୀ ଆଗରେ ଗପିଗଲା । ସ୍ତ୍ରୀ ଖୁସି ହେବା ପରିବର୍ତ୍ତେ ଅସନ୍ତୁଷ୍ଟ ହୋଇ କହିଲା, "ପିଶାଚଠୁଁ ଆଉ ଦୁଇ ଚାରି ଟେକା ସୁନା ଆଦାୟ କରି ପାରିଲ ନାହିଁ ? ଏତିକରେ ତୁଷ୍ଟ ହୋଇଗଲ ?"



"ଓହୋ, ବଡ଼ ଭୁଲ୍ ହୋଇଗଲା ।" ଜଗପତି କହିଲା । ସକାଳେ ମହାଜନମାନେ ଆସିବାରୁ ଜଗପତି ସେମାନଙ୍କୁ ଧରି ଜଣେ ବଣିଆ ପାଖକୁ ସୁନାଟେଲା ବିକି କରଜତକ ପରିଶୋଧ କଲା । ଯେତିକି ଟଙ୍କା ଉଦ୍‌ବୃତ୍ତ ରହିଲା, ସେଥିରେ ମାସଟିଏ ଆରାମରେ ଖାଇପିଇ ଚଳିଲା ।

ମାସକ ପରେ ସ୍ତ୍ରୀ କହିଲା, "ଏଥର ତମେ ପୁଣି ଯାଇ ଆତ୍ମହତ୍ୟାର ଅଭିନୟ କର ।"

ଜଗପତି ତାହାହିଁ କରନ୍ତେ ପିଶାଚ ତାକୁ ରୋକି ପଚାରିଲା, "ପୁଣି ହେଲା କ'ଣ ?"

"କ'ଣ ଆଉ କହିବି ! କରଜ ସିନା ସୁଝି ଦେଲି, କିନ୍ତୁ ପରିବାର ପୋଷଣ କରିବି କିପରି ?" ଜଗପତି କହିଲା ।

ପିଶାଚ ଭୁସ୍ କିନା ଭିତରକୁ ପଶିଯାଇ ପୁଣି ଗୋଟାଏ ସୁନା ଧରି ଉଠିଲା ଓ ଜଗପତିକୁ ଧରାଇ ଦେଲା । ଦୁଇ ମାସରେ ଜଗପତି ବିଳାସରେ ସବୁ ଉଡ଼ାଇ ଦେଇ ପୁଣି ଯାଇ କୂଅ ପାଖରେ ପହଞ୍ଚି ପିଶାଚକୁ କହିଲା, "ମୋ ଭାଗ୍ୟ ଖରାପ । କାମଦାମ ମିଳୁ ନାହିଁ ।"

ପିଶାଚ ପୁଣି ଗୋଟାଏ ସୁନା ଦେଲା । ଜଗ-ପତି ଆନନ୍ଦରେ ଘରକୁ ଫେରିବା ମାତ୍ରେ ତା' ସ୍ତ୍ରୀ ତାକୁ ରଖିନେଲା ଓ ପରଦିନ ବହୁତ ଅଳଙ୍କାରମାନ ଗଢ଼ାଇବାର ବ୍ୟବସ୍ଥା କଲା ।

ଅତଏବ ପରଦିନ ଜଗପତି ପୁଣି ଯାଇ କୂଅକୁ ଡେଇଁ ପଡ଼ିବାର ଅଭିନୟ କଲା । ପିଶାଚ ତାକୁ ରୋକିବାରୁ ସେ କହିଲା, "ଜୀବନ ପ୍ରତି ମୋର ଆଉ କୌଣସି ମାୟାମମତା ନାହିଁ ।"

"ଦେଖୁଛି ମରିବାକୁ ତମେ ଦୃଢ଼ ନିଶ୍ଚିତ । ତମ ସହ ଆଳାପ ହେବା ଦିନରୁ ମୋତେ ବି ଆଉ ଏକୁଟିଆ ରହିବାକୁ ଭଲ ଲାଗୁନାହିଁ । ଆସ, କୂଅକୁ ଡେଇଁପଡ଼ । ଯଦି ନ ମରିବ, ତେବେ ତମ ବେକ ମୋଡ଼ି ତମ ମରିବାରେ ମୁଁ ସାହାଯ୍ୟ କରିବି । ତେଣିକି ଦୁଇ ପିଶାଚ ସାଙ୍ଗ ହୋଇ ଗପସପ କରି ବେଳ କାଟିବା ।"

"ଚେଷ୍ଟା କରି ଦେଖେଁ । ହୁଏତ କିଛି କାମ ଦାମ ମିଳି ଯାଇପାରେ !" ପିଶାଚ ଉଦ୍ଦେଶ୍ୟରେ ଏତିକି କହିଦେଇ ଜଗପତି ଦେଲା ଦୌଡ଼ !

ପଛରୁ ପିଶାଚର ଅଟ୍ଟହାସ୍ୟ ଶୁଭିଲା ।






# ସମର୍ଥ ପତ୍ନୀ

ଗଙ୍ଗାପୁରରେ ଗୋବିନ୍ଦଗୁପ୍ତ ନାମକ ଜଣେ ଭଲ ବ୍ୟବସାୟୀ ଥିଲେ । ତାଙ୍କ ପୁଅ ଶ୍ରୀମନ୍ତ ଗୁପ୍ତ କିନ୍ତୁ ଥିଲା ଏକବାରେ ନିର୍ବୁଦ୍ଧିଆ । ସେ ବିବାହଯୋଗ୍ୟ ହେଲେ ମଧ୍ୟ ବୟସ ଅନୁପାତରେ ବୁଦ୍ଧିର ବିକାଶ ଘଟି ନ ଥିଲା । କେହି କେହି ପ୍ରସ୍ତାବ ଦେଲେ ଯେ ଶ୍ରୀମନ୍ତର ବାହାଘର ହୋଇଗଲେ ବୁଦ୍ଧି ମଧ୍ୟ ବଦଳି ଯିବ । ଗୋବିନ୍ଦ ଗୁପ୍ତ ଧନୀ ଥିଲେ । ତେଣୁ ସହଜରେ ଏକ ଯୋଗ୍ୟା କନ୍ୟା ଖୋଜି ଶ୍ରୀମନ୍ତ ସହିତ ବିବାହ କରାଇ ଦେଲେ ।

ଶ୍ରୀମନ୍ତର ପତ୍ନୀ ଲକ୍ଷ୍ମୀ ଖାଲି ସୁନ୍ଦରୀ ନୁହେଁ, ଗୁଣବତୀ ବି ଥିଲା । ଶ୍ରୀମନ୍ତ ବିବାହ ସମୟରେ ଲଜ୍ଜାବଶରେ କନ୍ୟା ଆଡ଼କୁ ଥରେ ବି ଅନାଇଲା ନାହିଁ । ତାହାର ଏହି ଭୋଳାପଣ ଦେଖି କନ୍ୟା ପକ୍ଷର ଲୋକେ ଚିନ୍ତିତ ହୋଇ ପଡ଼ିଲେ । କିନ୍ତୁ ଲକ୍ଷ୍ମୀ ସେମାନଙ୍କୁ ବୁଝାଇଲା ଯେ ଚେଷ୍ଟା କଲେ ତା' ସ୍ୱାମୀଙ୍କ ସ୍ୱଭାବରେ ପରିବର୍ତ୍ତନ ଆସିପାରେ ।

ଶ୍ରୀମନ୍ତ କୂପମଣ୍ଡୁକ ପରି ନିଜ ଘର ବିଷୟ ଛଡ଼ା ଆଉ କିଛି ଜାଣି ନ ଥିଲା । ସଂସାରର ଭଲମନ୍ଦ ବିଷୟରେ ତା'ର କୌଣସି ଜ୍ଞାନ ନ ଥିଲା । ଗୋବିନ୍ଦଗୁପ୍ତ କିଛି ଧନ ଦେଇ ପୁଅ ଓ ବୋହୂଙ୍କୁ ତୀର୍ଥ ଯାତ୍ରା କରିବାକୁ ପଠାଇଲେ, ଏଇଆ ଭାବି ଯେ ତଦ୍ୱାରା ହୁଏତ କିଛି ପରିବର୍ତ୍ତନ ଆସିପାରେ । ସେ ଜାଣିଥିଲେ ଯେ ତାଙ୍କର ବୋହୂ ଖୁବ୍ ବୁଦ୍ଧିମତୀ । ତେଣୁ ସାଙ୍ଗରେ ଆଉ କାହାକୁ ପଠାଇଲେ ନାହିଁ ।

ନିଜ ସ୍ତ୍ରୀ ସହିତ ଗଲାବେଳେ ମଧ୍ୟ ଶ୍ରୀମନ୍ତ ଏପରି ଭାବ ଦେଖାଉଥାଏ ଯେପରିକି ସେ କୌଣସି ଅପରିଚିତ ବ୍ୟକ୍ତି ସହିତ ଯାଉଛି । କିନ୍ତୁ ଘରୁ ବାହାରକୁ ଆସିବାରୁ ନୂଆ ନୂଆ ସ୍ଥାନ ସବୁ ଓ ନୂଆ ଦୃଶ୍ୟ ସବୁ ଦେଖି ତାକୁ ଖୁବ୍ ଖୁସି ଲାଗିଲା । ଖର୍ଚ୍ଚ କରିବାକୁ ଧମ ହାତରେ ଧନ ଥିଲା । ତେଣୁ ଯାତ୍ରାଟି ଆରାମରେ



କଟିଲା । କିନ୍ତୁ ନୂଆ ସ୍ଥାନରେ ଶ୍ରୀମନ୍ତ ପାଇଁ ଲକ୍ଷ୍ମୀ ହିଁ ଏକମାତ୍ର ଅବଲମ୍ବନ, ସେ ବାଳକଟିଏ ପରି ତା' ପଛେ ପଛେ ଚାଲୁଥିଲା । ତା'ର ଭୟ ହେଉଥିଲା କାଳେ ସେ ଟିକିଏ ଦୂରେଇ ଗଲେ ଆଉ ସ୍ତ୍ରୀକୁ ଖୋଜି ପାଇବ ନାହିଁ !

ଗୋଟିଏ ସହରରେ ଏକ ଦୋକାନରେ ଝୁଲୁଥିଲା ଅଙ୍ଗୁର ଓ କଦଳୀ । ତାକୁ ଦେଖିବା ମାତ୍ରେ ଶ୍ରୀମନ୍ତର ନିଜ ଜେଜେମା କଥା ମନେ ପଡ଼ିଲା । ତା' ଜେଜେମା ଅଙ୍ଗୁର ଓ କଦଳୀ ଖାଇବାକୁ ଖୁବ୍ ଭଲ ପାଉଥିଲେ । ସେ ସ୍ତ୍ରୀ ଲକ୍ଷ୍ମୀକୁ କହିଲା, "ଏସବୁ ଫଳ ମୋର ଜେଜେ-ମା'ଙ୍କର ଖୁବ୍ ପସନ୍ଦ । କିନ୍ତୁ ଏଡ଼େ ସୁନ୍ଦର ଫଳ ସେ ବୋଧେ ଖାଇ ନ ଥିବେ । ଶୁଣିଛି ଯେ ମୋ ଜେଜେ ଜେଜେମାଙ୍କ ପାଇଁ ପାଞ୍ଚ କୋଶ ଦୂରରୁ ଅଙ୍ଗୁର ଆଣି ଦେଉଥିଲେ ।"

"ଫେରିବାବେଳେ ଏହି ଫଳରୁ କିଛି ଘରକୁ ନେଇଯିବା ।" ଲକ୍ଷ୍ମୀ କହିଲା ।

"ସେ ପର୍ଯ୍ୟନ୍ତ କାହିଁକି ଅପେକ୍ଷା କରିବା । ଆମ ଗାଁର କୌଣସି ଲୋକ ମିଳିଲେ ତା' ହାତରେ ପଠାଇ ଦେଇ ପାରିବା ତ !" ଶ୍ରୀମନ୍ତ କହିଲା ।

ଲକ୍ଷ୍ମୀ ଅନ୍ୟମନସ୍କ ଥିଲା । ସେ ହଁ ବୋଲି କହିଦେଲା । ଶ୍ରୀମନ୍ତ ତୀର୍ଥର ସବୁଲୋକଙ୍କ ମଧ୍ୟରେ ଗାଁ ଲୋକଙ୍କୁ ଖୋଜିଲା । କିଛି ସମୟ ପରେ ଶ୍ରୀମନ୍ତକୁ ଗୋଟାଏ ନିରୋଳା ସ୍ଥାନରେ ବସାଇ ଦେଇ ଲକ୍ଷ୍ମୀ ଗାଧୋଇ ଗଲା ।

ରାସ୍ତାରେ ଯାଉଥିବା ଦୁଇ ଜଣ ଲୋକଙ୍କୁ ଡାକି ଶ୍ରୀମନ୍ତ ପଚାରିଲା, "ତମେ ରଙ୍ଗପୁର ନିବାସୀ ନା ? ଦୁଇ ଜଣ ପରସ୍ପର ଟିକେ ଠାର-ଠାରି ହୋଇ କହିଲେ, "ହଁ, ହଁ, କୁହ କ'ଣ ଦରକାର ? ଆମେ ତ ରଙ୍ଗପୁର ନିବାସୀ ।"

"ମୁଁ ଗୋବିନ୍ଦଗୁପ୍ତଙ୍କ ପୁତ୍ର । ମୋ ଜେଜେ-ମାଙ୍କ ପାଇଁ ମୁଁ କିଛି ଫଳ ପଠାଇବାକୁ ଚାହେଁ । ତମେମାନେ କିଛି ଖରାପ ଭାବିବ ନାହିଁ ତ ତୁମମାନଙ୍କ ହାତରେ ପଠାଇ ଦିଅନ୍ତି । କ'ଣ, ନେଇଯାଇ ପାରିବ ?" ଶ୍ରୀମନ୍ତ ପଚାରିଲା ।

"ଏଇଟା ଗୋଟାଏ ଆଉ ବଡ଼ କଥା କ'ଣ ? ଶୀଘ୍ର ଫଳ ଆଣିଦିଅ, ଆମେ ଯିବୁ ।" ଜଣେ କହିଲା ।

ଶ୍ରୀମନ୍ତ ଖୁବ୍ ଖୁସି ହେଲା । ଗୋଟାଏ ବଡ଼

ଦୋକାନରୁ ପଚାଶ ଟଙ୍କାର ଫଳ ଏକ ବଡ଼ ଝୁଡ଼ିରେ ଭର୍ତ୍ତି କରି ସେମାନଙ୍କୁ ଦେଇ କହିଲା, "ମୁଁ ତୁମମାନଙ୍କ ଏ ଉପକାର କେବେ ମଧ୍ୟ ଭୁଲି ପାରିବି ନାହିଁ ।"

ସେମାନେ ଫଳ ନେଇ ଚାଲିଗଲେ । ଶ୍ରୀମନ୍ତ ଲକ୍ଷ୍ମୀ ପାଖରେ ସବୁ କଥା କହିଲା । ଲକ୍ଷ୍ମୀ ବୁଝାଇଲା, "ଭବିଷ୍ୟତରେ କେବେ ଏପରି ଅପରିଚିତ ବ୍ୟକ୍ତିଙ୍କୁ ବିଶ୍ୱାସ କରିବ ନାହିଁ, ମନେରଖ ।"

ଉକ୍ତ ଦୁଇ ଜଣଙ୍କର ଲୋଭ ଆହୁରି ବଢ଼ିଲା । ସେମାନେ ଚାହିଁଲେ ଶ୍ରୀମନ୍ତକୁ ଆହୁରି ଠକିବାକୁ । ଶ୍ରୀମନ୍ତ ଓ ଲକ୍ଷ୍ମୀ ଯେତେବେଳେ ଅନ୍ୟ ତୀର୍ଥକୁ ଗଲେ ସେମାନେ ତାଙ୍କର ପିଛା ଧରିଲେ । ସେଠାରେ ଗୋଟିଏ ଘର ଭଡ଼ା କରି ଲକ୍ଷ୍ମୀ ଓ ଶ୍ରୀମନ୍ତ ରହିଲେ । ଶ୍ରୀମନ୍ତ ଯେତେବେଳେ ଘରୁ ଏକା ବାହାରକୁ ଆସିଲା ସେ ଦୁଇ ଜଣ ତା' ସହିତ ଦେଖାକରି ସବୁ କୁଶଳ ପ୍ରଶ୍ନ ପଚାରିଲେ ।

ସେମାନଙ୍କୁ ଦେଖି ଶ୍ରୀମନ୍ତ ଭାରି ଖୁସି ହେଲା । ଓ ପଚାରିଲା, "ତମେ ଦୁହେଁ ରଙ୍ଗପୁରରୁ କେବେ ଫେରିଲ ? ମୋର ଜେଜେମା ଭଲ ଅଛନ୍ତି ତ ? ଘରର ଅନ୍ୟ ସବୁ ଖବର ଭଲ ତ ?"

"ତମେ ଯେଉଁ ଫଳ ପଠାଇଥିଲ, ତାକୁ ପାଇ ତୁମ ଜେଜେମା ଖୁବ୍ ଖୁସି ହେଲେ । ତୁମର ବାପା ମଧ୍ୟ ତୁମ ଉପରେ ଖସି ହେଲେ । କିନ୍ତୁ ତୁମ ଜେଜେମା ତୁମକୁ ଆଉ ଗୋଟିଏ କଥା କହିବା ପାଇଁ ଅନୁରୋଧ କରି କହିଛନ୍ତି । ସେ ଗୋଟିଏ ରୂପାଥାଳୀ ଓ ସୁନାର ଗିଲାସ






ଗୃହାନ୍ତି । ଶୀଘ୍ର ପଠାଇ ଦେବାକୁ କହିଛନ୍ତି । କାହା ହାତରେ ଶୀଘ୍ର ପଠାଅ । ଆଚ୍ଛା ବର୍ତ୍ତମାନ ଆମେ ଚାଲିଲୁ ।"

"ଟିକେ ରୁହ ଭାଇ, ତୁମେମାନେ ପୁଣି କେବେ ରଙ୍ଗପୁର ଯିବ ?" ଶ୍ରୀମନ୍ତ ପଚାରିଲା ।

"ଆମେ ତ ଏବେ ଯିବୁ । କିନ୍ତୁ ଆଉ କାହା ହାତରେ କାହିଁକି ପଠାଉ ନାହିଁ ?" ଦୁଇ ଜଣ କହିଲେ ।

"ଏଠୁ ନେଇଯିବା ପରି ଲୋକ ମୋର କିଏ ଅଛି ?" ଶ୍ରୀମନ୍ତ ଆଶଙ୍କା ପ୍ରକାଶ କରି କହିଲା ।

"ତେବେ ଶୀଘ୍ର ରୂପାଥାଳୀ ଓ ସୁନା ଗଡ଼ୁ କିଣି କରି ଦେଇଦିଅ ।" ଦୁହେଁ କହିଲେ ।

ଶ୍ରୀମନ୍ତ ସଙ୍ଗେ ସଙ୍ଗେ ବସା ଭିତରକୁ ଗଲା ଓ ଟଙ୍କା ନେଇ ଲେଉଟି ଆସିଲା । ତିନି ଜଣ ଗୋଟିଏ ଦୋକାନକୁ ଯାଇ ଦେଢ଼ଶ ଟଙ୍କାର ଗୋଟିଏ ରୂପାଥାଳି ଓ ସୁନା ଗିଲାସ କିଣିଲେ । ଶ୍ରୀମନ୍ତ ସେସବୁ ସେହି ଯାତ୍ରୀମାନଙ୍କ ହାତରେ ଦେଇ ନିଜର କୃତଜ୍ଞତା ପ୍ରକାଶ କଲା ।

ସେମାନଙ୍କୁ ପଠାଇ ଦେଇ ଶ୍ରୀମନ୍ତ ବସାକୁ ଲେଉଟି ଆସିଲା ଓ ସ୍ତ୍ରୀକୁ କହିଲା, ତୁମେ ସେଦିନ ଅବିଶ୍ୱାସ କରୁଥିଲ ନା ? ସେମାନେ ରଙ୍ଗପୁରରୁ ଫେରି ଆସିଛନ୍ତି ?" ଏହାପରେ ସବୁ ଘଟଣା ଲକ୍ଷ୍ମୀକୁ ଶୁଣାଇଲା ।

ଲକ୍ଷ୍ମୀ ଥଳି ଖୋଲି ଦେଖିଲା ବେଳକୁ ଟଙ୍କା ନାହିଁ । ତା' ମୁହଁରୁ କଥା ବାହାରିଲା ନାହିଁ । ସେ ଭାବିଲା ଯେ ଦୁଇ ଜଣଙ୍କୁ ଚୋର ବୋଲି ପ୍ରମାଣିତ କଲେହିଁ ଶ୍ରୀମନ୍ତର ଆଖି ଖୋଲିବ । ଏକଥା ଭାବି ଲକ୍ଷ୍ମୀ ଶ୍ରୀମନ୍ତକୁ କହିଲା, "ତୁମେ ଠିକ୍ କହିଛ, ସେହି ଦୁଇ ଜଣ ବଡ଼ ସଜ୍ଜନ ବ୍ୟକ୍ତି । ଏଥର ସେମାନେ ଆସିଲେ ଆମେ ସେମାନଙ୍କୁ ଆଦରସତ୍କାର କରିବା ।"

ପରେ ଲକ୍ଷ୍ମୀ ନିଜର ଅଳଙ୍କାର ବିକି ଅନ୍ୟ ତୀର୍ଥଯାତ୍ରା ପାଇଁ ପ୍ରସ୍ତୁତ ହେଲା । ସେ ଦମ୍ପତିଙ୍କୁ ବୋକା ଭାବି ଚୋରଙ୍କ ମନରେ ଆହୁରି ଲୋଭ ବଢ଼ିଗଲା । ଅନ୍ୟ ତୀର୍ଥରେ ମଧ୍ୟ ସେମାନେ ଶ୍ରୀମନ୍ତ ସହିତ ଦେଖା କଲେ । ବସ୍ତୁତ ସେହି

ସହିତ ଶ୍ରୀମନ୍ତ ସେମାନଙ୍କୁ ଡାକିଲା ଓ ନିଜ ବସାକୁ ନେଇଗଲା ଓ ଲକ୍ଷ୍ମୀ ସହିତ ପରିଚୟ ମଧ୍ୟ କରାଇ ଦେଲା ।

ଲକ୍ଷ୍ମୀ ସେମାନଙ୍କୁ ଦେଖିବା ମାତ୍ରେ ହିଁ କହିଲା, "ଆସନ୍ତୁ, ଆସନ୍ତୁ, ରଙ୍ଗପୁରରେ ଆମ ଘରର ସମସ୍ତେ ଭଲ ଅଛନ୍ତି ତ ? ଆପଣ ଦୁହେଁ ଆମକୁ ବହୁତ ସାହାଯ୍ୟ କରିଛନ୍ତି ।"

ଲକ୍ଷ୍ମୀର ଏହି ବ୍ୟବହାରରେ ଚୋରମାନେ ଭାବିଲେ ଇଏ ମଧ୍ୟ ସ୍ୱାମୀ ଭଳି ଭୋଳା ଲୋକ । ଲକ୍ଷ୍ମୀ ଅତି ଯତ୍ନରେ ଓ ଆଦର ସହକାରେ ସେମାନଙ୍କୁ ମିଠାଇ ଖୁଆଇଲା ଓ କହିଲା, "ଆପଣମାନେ ଦୟାକରି ଆଉ ଏକ ସାହାଯ୍ୟ ଆମକୁ କରନ୍ତୁ ।"

"ଆମେ ଆପଣଙ୍କ ପାଇଁ ବିଶେଷ କିଛି କଷ୍ଟ କରି ନାହୁଁ । ଆମେ ଶିଘ୍ର ପୁଣି ରଙ୍ଗପୁର ଯିବୁ । କିଛି ଖବର ଦେବାର ଅଛି ତ କୁହନ୍ତୁ ।" ଦୁଇ ଚୋର ଏକାଠି କହିଲେ ।

"ତେବେ ରଙ୍ଗପୁର ଯିବା ଆଗରୁ ଥରେ ଦେଖାକରି ଯିବେ ।" ଲକ୍ଷ୍ମୀ ଏକଥା କହି ସେମାନଙ୍କୁ ବିଦାୟ ଦେଲା ।

ଏହାପରେ ଲକ୍ଷ୍ମୀ ସେହି ବସାରେ ଅନ୍ୟ କୋଠରୀମାନଙ୍କରେ ଥିବା ଯାତ୍ରୀମାନଙ୍କୁ ସମସ୍ତ କଥା କହିଲା ଓ କହିଲା ସେମାନଙ୍କୁ ଧରି ପକା-ଇବାକୁ ଗୋଟାଏ ନାଟକ ରଚନା କରିବା ଦରକାର । ସେଥିପାଇଁ ସେ ଯାତ୍ରୀମାନଙ୍କ ମଧ୍ୟରୁ ତା'ର ଶଶୁର ଓ ଶାଶୁ ବୟସର ଦୁଇ



ଜଣ ବୁଢ଼ାବୁଢ଼ୀ ଯୋଗାଡ଼ କଲା ଓ ସେମାନଙ୍କୁ ନେଇ ତା' ଘରେ ଖଟ ଉପରେ ବସାଇଲା । ସେଠାରେ ଯୋତା ଓ ବାଡ଼ ମଧ୍ୟ ରଖିଲା । ଦେଖିଲେ ମନେହେବ ସେମାନେ ଏଇ ମାତ୍ର ଗାଁରୁ ଆସି ପହଞ୍ଚିଛନ୍ତି । ଶ୍ରୀମନ୍ତଙ୍କୁ ଲକ୍ଷ୍ମୀ କହିଲା କିଛି ନ କହି ସେ ଖାଲି ବସି ଦେଖୁ କ'ଣ ହେଉଛି ।

କିଛି ସମୟ ପରେ ଚୋର ଦୁହେଁ ପହଞ୍ଚି ନୂଆ ଲୋକ ଦେଖି ଟିକେ ଥତମତ ହେଲେ । "ଆସନ୍ତୁ, ବସନ୍ତୁ, ରହିଗଲେ କାହିଁକି ? ଇଏ ହେଉଛନ୍ତି ମୋର ଶ୍ୱଶୁର ଗୋବିନ୍ଦ ଗୁପ୍ତ ଆଉ ଇଏ ମୋର ଶାଶୁ ।" ଲକ୍ଷ୍ମୀ ସେମାନଙ୍କୁ ପରିଚୟ କରାଇ ଦେଲା ।

ଚୋରମାନେ ବ୍ୟସ୍ତ ହୋଇ ପଳାଇବା ପାଇଁ କବାଟ ଆଡ଼କୁ ଗଲେ କିନ୍ତୁ ଦେଖିଲେ କାଳ-ପୁରୁଷ ପରି ଚାରି ଜଣ ଯୁବକ କ୍ରୋଧପୂର୍ଣ୍ଣ ଦୃଷ୍ଟିରେ ତାଙ୍କ ଆଡ଼କୁ ଚାହିଁଛନ୍ତି ।

ଲକ୍ଷ୍ମୀ ବର୍ତ୍ତମାନ ଅଣ୍ଟାରେ ଲୁଗା ଭିଡ଼ି ସେମାନଙ୍କୁ ପଚାରିଲା, "ମୋର ସ୍ୱାମୀ ତୁମକୁ ଯେଉଁ ରୁପା ଥାଳୀ ଓ ସୁନା ଗିଲାସ ଦେଇଥିଲେ ସେସବୁ କେଉଁଠି ? କହିବ ନାହିଁ ତ ତୁମ ହାଡ଼ ଭାଙ୍ଗି ଦେବି ।"

"କ୍ଷମା କରନ୍ତୁ । ଆମେ ଲୋଭରେ ପଡ଼ି ଠକିଛୁ । ଆମେ ରଙ୍ଗପୁର କେଉଁଠି ଜାଣିନାହୁଁ ବା ତାଙ୍କୁ ମଧ୍ୟ ଜାଣିନାହୁଁ ।" ଏକଥା କହି ସେମାନେ ଲକ୍ଷ୍ମୀର ପାଦ ତଳେ ପଡ଼ିଗଲେ ।

ଶ୍ରୀମନ୍ତ ରାଗିଯାଇ ସେମାନଙ୍କ ପିଠିରେ ବାଡ଼ିରେ କେତେ ପାହାର ବସାଇ ଦେଇ କହିଲା, "ତମେ ମୋତେ କପରି ଏଭଳି ଠକାଇଲ ?" ଜଣେ ଚୋର ସେଠାରେ ଅଟକି ରହିଲା ଓ ଅନ୍ୟ ଜଣେ ଯାଇ ଜିନିଷତକ ନେଇ ଆସିଲା । ଏହି କାର୍ଯ୍ୟରେ ଯେଉଁମାନେ ଲକ୍ଷ୍ମୀର ସାହାଯ୍ୟ କରିଥିଲେ ସେମାନଙ୍କୁ ଲକ୍ଷ୍ମୀ କୃତଜ୍ଞତା ଜଣାଇଲା । ସେହିଦିନଠାରୁ ଶ୍ରୀମନ୍ତର ନିଜ ସ୍ତ୍ରୀର ବୁଦ୍ଧି ଉପରେ ବିଶ୍ୱାସ ଆସିଲା । ଏହିପରିଭାବରେ ସେ ନିଜ ସ୍ତ୍ରୀ ଦ୍ୱାରାହିଁ ବ୍ୟବହାରିକ ଜ୍ଞାନ ଲାଭ କରି ଶିଘ୍ର ଏକ ବୁଦ୍ଧିମାନ ବ୍ୟକ୍ତିରେ ପରିଣତ ହେଲା ।





# ଚୌର୍ଯ୍ୟଶାସ୍ତ୍ର

କେତେ ବର୍ଷ ତଳର କଥା । ଗୋଟିଏ ଡକାଯୁତ ବହୁବାର ଡକାୟିତି କରି ବହୁତ ଧନ ଠୁଳ କଲା । କିନ୍ତୁ କେହି ତାକୁ ଧରିପାରିଲେ ନାହିଁ । ବୁଢ଼ା ହେବାରୁ ସେ ଡାକୁବୃତ୍ତି ଛାଡ଼ି ଦେଲା ଓ ଧାରାନଗର ନାମକ ସ୍ଥାନରେ ଯାଇ ପହଞ୍ଚିଲା । ସେଠାରେ ସେ ନିଜକୁ ଏକ ବିଦେଶୀ ବ୍ୟବସାୟୀ ବୋଲି ପରିଚୟ ଦେଇ ବାସ କରିବାକୁ ଲାଗିଲା । ସେହି ଡକାଯୁତଟିର ନାମ ଥିଲା ଧାରାଦତ୍ତ ।

ବୁଢ଼ା ହେବାରୁ ତା' ଦେହ ମଝିରେ ମଝିରେ ଖରାପ ରହୁଥିଲା । ସେଠାରେ ସୋମ ଶାସ୍ତ୍ରୀ ନାମରେ ଏକ ପ୍ରସିଦ୍ଧ ବୈଦ୍ୟ ଥିଲେ । ତାଙ୍କ ଚିକିତ୍ସାରେ ରହି ଧାରାଦତ୍ତ କ୍ରମେ ଭଲ ହେବାକୁ ଲାଗିଲା ।

ଏପରି ଅବସ୍ଥାରେ ହଠାତ୍ କିନ୍ତୁ ବୈଦ୍ୟ ମରିଗଲେ । ଧାରାଦତ୍ତର ମନ କିନ୍ତୁ ବହୁତ ଦୁଃଖ ହେଲା, କାରଣ ତାଙ୍କ ପରି ବୈଦ୍ୟ ଆଉ ହୁଏତ ମିଳିବେ ନାହିଁ । କିନ୍ତୁ ବୈଦ୍ୟଙ୍କର ସୁମନ୍ତ ନାମରେ ଏକ ଶିଷ୍ୟ, ବୈଦ୍ୟଙ୍କ ଭଳି ଅତିଶୀଘ୍ର ଚିକିତ୍ସା ଶାସ୍ତ୍ରରେ ବିଖ୍ୟାତ ହୋଇ ଉଠିଲେ ।

ଧାରାଦତ୍ତ ଯେତେବେଳେ ପୁଣି ବେମାର ହେଲା ସେ ସୁମନ୍ତଙ୍କ ପାଖକୁ ଚିକିତ୍ସା ପାଇଁ ଗଲା । ରଙ୍ଗନାଥ ନାମରେ ଜଣେ ବାଳକ ଧାରାଦତ୍ତ ପାଖରେ ଥିଲା; ସେ ଧାରାଦତ୍ତକୁ ବଳଦ ଗାଡ଼ିରେ ପକାଇ ସେଠାକୁ ନେଇଗଲା ।

ରାସ୍ତାରେ ଏକ ବଡ଼ ଭିଡ଼ ଜମିଥିଲା । ଜଣେ ଯୁବକକୁ ଖମ୍ବରେ ବାନ୍ଧି ଦେଇ ଲୋକମାନେ ପିଟୁଥିଲେ । ରଙ୍ଗନାଥ ଗାଡ଼ିରଖି ବୁଝି ଆସି କହିଲା ଯେ, ଯୁବକଟି ଚୋରି କରି ଧରା ପଡ଼ିବାରୁ



ତାକୁ ଲୋକେ ପିଟୁଛନ୍ତି । ତା'ପରେ ସେ ଗାଡ଼ି ଚଳେଇବାରେ ମନ ଦେଲା ।

ଧାରାଦତ୍ତର ସେହି ଯୁବକଟି ପ୍ରତି ଦୟା ହେଲା । ସେ ଭାବିଲା; ଯୁବକଟି ବୋଧେ ଖେଳା ପିଲା । ଚୋରି ବିଦ୍ୟାରେ ନିପୁଣତା ଥିଲେ କେହି କେବେ ଧରି ପାରିବେ ନାହିଁ । ଧାରାଦତ୍ତ ନିଜେ ମଧ୍ୟ କେବେ ଧରା ପଡ଼ି ନ ଥିଲା ।

ଗାଡ଼ି ଚିକିତ୍ସାଳୟରେ ପହଞ୍ଚିଲା । ସୁମନ୍ତ ଧାରାଦତ୍ତଙ୍କର ରୋଗ ପରୀକ୍ଷା କରି ଔଷଧ ଦେଲେ । ଧାରାଦତ୍ତ କହିଲା, "ବୈଦ୍ୟରାଜ, ସୋମଶାସ୍ତ୍ରୀଙ୍କ ମୃତ୍ୟୁ ପରେ ସେପରି କବିରାଜ ଆଉ ସମ୍ଭବ ହେବେ ନାହିଁ ବୋଲି ଲୋକେ କହୁଥିଲେ । କିନ୍ତୁ ଆପଣ ତାଙ୍କର ଯୋଗ୍ୟ ଶିଷ୍ୟ ଏକଥା ସମସ୍ତେ ସ୍ୱୀକାର କରିବେ ।"

"ମହାଶୟ ! ଏସବୁ ଗୁରୁଙ୍କ କୃପା । ସେ ତାଙ୍କର ମୃତ୍ୟୁ ପୂର୍ବରୁ ଯାହା ସବୁ ଶିଖିଥିଲେ ଓ ଅନୁଭୂତି ଲଭ କରିଥିଲେ ସେସବୁ ବିସ୍ତାରିତ ଭାବରେ ସଂଗ୍ରହ କରି ଗୋଟିଏ ବୈଦ୍ୟଶାସ୍ତ୍ର ଲେଖିଥିଲେ । ମୁଁ ସେହି ଗ୍ରନ୍ଥ ସାହାଯ୍ୟରେ ହିଁ ରୋଗର ନିଦାନ ଓ ଚିକିତ୍ସା କରେ ।" ସୁମନ୍ତ କହିଲେ ।

ଧାରାଦତ୍ତ ଘରକୁ ଫେରିଲା । ସୁମନ୍ତର ଔଷଧ ତା' ଉପରେ ଭଲ କାମ କଲା । ସେଥିରୁ ତା' ମନରେ ଗୋଟିଏ ବିଚାର ଆସିଲା । ଏକ ଅନୁଭବ ପୂର୍ଣ୍ଣ ବୈଦ୍ୟଶାସ୍ତ୍ର ଯୋଗୁଁ ସୁମନ୍ତ ଏକ ପ୍ରସିଦ୍ଧ ବୈଦ୍ୟ ହୋଇ ପାରିଛି । ସେହିଭଳି ଯଦି ଚୌର୍ଯ୍ୟଶାସ୍ତ୍ରରେ ଜଣେ ଯୋଗ୍ୟ ବ୍ୟକ୍ତି ଏକ ଗ୍ରନ୍ଥ ଲେଖେ ତେବେ ଚୋରି କରିଥିବା ସେହି ଯୁବକ ଭଳି କେହି ଅସମର୍ଥ ଚୋର ଧରା ପଡ଼ିବେ ନାହିଁ ଓ ସେମାନଙ୍କର ଦଣ୍ଡ ପାଇବାର ଭୟ ରହିବ ନାହିଁ । ଏକଥା ଭାବି ଚୋରି କରିବାରେ ନିଜର ନୈପୁଣ୍ୟ ଥିବା ହେତୁ ଓ ଅନୁଭୂତିକୁ ନେଇ ଏକ ଚୋରିବିଦ୍ୟା ବହି ରଚନା କରିବା ନିମନ୍ତେ ଧାରାଦତ୍ତ ମନେ ମନେ ଠିକ୍ କଲା ।

ଆରମ୍ଭରୁ ସେ ନିଜର ଅନୁଭୂତି ସବୁ ସ୍ମରଣ କଲା । ପ୍ରଥମେ ଚୋର ଆଗରେ ଯେଉଁ ସବୁ ସମସ୍ୟା ଉପସ୍ଥିତ ହୁଏ, ତାହା ସବୁ ସ୍ମରଣ କରି କିପରି ସେସବୁର ସମାଧାନ ହେବ ସେସବୁର ବିବରଣୀ ଦେଇ, ସେ ଏକ ଗ୍ରନ୍ଥ ରଚନା ଆରମ୍ଭ କଲା । କିଛି ଦିନ ପରେ ଗ୍ରନ୍ଥ ରଚନା ସମାପ୍ତ

ହେଲା । ତାକୁ ପଢ଼ି ସେ ନିଜେ ଖୁବ୍ ଖୁସି ହେଲା ।

ଏ ଗ୍ରନ୍ଥ ରଚନା ବିଷୟ ରଙ୍ଗନାଥ ଜାଣିଥାଏ ଏବଂ ଏହା ମଧ୍ୟ ଜାଣିଥିଲା ଯେ ତାହା ଗୋଟିଏ ଚୌର୍ଯ୍ୟଶାସ୍ତ୍ର । ସେ ବୁଝିଲା ଯେ ତା'ର ମାଲିକ ଚୋର ବିଦ୍ୟାରେ ଅତ୍ୟନ୍ତ ନିପୁଣ ଥିଲା । କିନ୍ତୁ ଧାରାଦତ୍ତ ଭାବିଥିଲା ଯେ ରଙ୍ଗନାଥ ସେ ଶାସ୍ତ୍ରର ରହସ୍ୟ ଜାଣେ ନାହିଁ; ଯଦି ଜାଣେ ସେଥିରେ ବିଶେଷ କିଛି କ୍ଷତି ନାହିଁ ।

ରଙ୍ଗନାଥ ସୁବିଧା ପାଇବା ମାତ୍ରେ ଚୋରି ଶାସ୍ତ୍ରଟି ପଢ଼ିବାରେ ଲାଗିଲା । ତା' ମନ ଭିତରେ ଅନେକ ବିଚାର ଆସିଲା । ଫଳରେ ଦିନେ ସେହି ଶାସ୍ତ୍ରଟି ଚୋରି କରି ସେ ମାଲିକ ଘରୁ ପଳାଇଲା ।



ଏକଥା ଜାଣିବା ମାତ୍ରେ ଧାରାଦତ୍ତ ହତବମ୍ବ ହେଲା । କାରଣ ରଙ୍ଗନାଥ ଥିଲା ଖୁବ୍ ବିଶ୍ୱାସୀ ଓ ବୁଦ୍ଧିମାନ, ସେ କିପରି ଏହା କଲା ? ଏହି ଘଟଣାର କିଛି ଦିନ ପରେ ନଗରରେ ବିଭିନ୍ନ ବିଚିତ୍ର ଧରଣର ଚୋରି ସବୁ ହେବାକୁ ଲାଗିଲା । କିନ୍ତୁ ଚୋରକୁ କେହି ଧରି ପାରିଲେ ନାହିଁ । ଚୋରିର ବିବରଣୀ ଶୁଣି ଧାରାଦତ୍ତର ନିଜଗ୍ରନ୍ଥ କଥା ମନେ ପଡ଼ିଲା । ସେ ସ୍ପଷ୍ଟ ଜାଣି ପାରିଲା ଯେ ତା' ଗ୍ରନ୍ଥରେ ସେ ଚୋରିବିଦ୍ୟା ପାଇଁ ଯାହାସବୁ ଲେଖିଥିଲା ସେସବୁ ପ୍ରୟୋଗ କରି ଚୋରି କରୁଛି ରଙ୍ଗନାଥ ।

ଦିନକୁ ଦିନ ଚୋରି ସଂଖ୍ୟା ବଢ଼ିବାକୁ ଲାଗିଲା । ଧାରାଦତ୍ତ ଅନୁମାନ କଲା ଯେ ଦିନେ ନା ଦିନେ ରଙ୍ଗନାଥ ତା' ଘର ଲୁଟ କରିବାକୁ ଆସିବ । ନିଜ ମାଲିକ ପାଖରେ କେତେ ଧନ ଅଛି ସେ କଥା ରଙ୍ଗନାଥ ଭଲଭାବରେ ଜାଣି-ଥିଲା । ତା'ଛଡ଼ା ଧାରାଦତ୍ତର ଦୈନନ୍ଦିନ ଜୀବନ ଓ ଘରର ଭଲମନ୍ଦ ସବୁ ତାକୁ ମାଲୁମ୍ ଥିଲା । ଏହି କଥା ଚିନ୍ତା କରି ଧାରାଦତ୍ତର ମାନସିକ ଶାନ୍ତି ନଷ୍ଟ ହେଲା । ଅନେକ ଭାବଚିନ୍ତା ଶେଷରେ ସେ ଠିକ୍ କଲା ଯେ ରଙ୍ଗନାଥ ଯେଉଁଦିନ ତା' ଘରକୁ ଆସିବ, ସେ ତାକୁ ଧରିବ । ଏଣେ ନଗରରେ ଧେଣ୍ଡୁରା ଦିଆଯାଇ ଥାଏ ଯେ ଯେଉଁ ବ୍ୟକ୍ତି ଚୋରକୁ ଧରିଦେବ ତାକୁ ଲକ୍ଷେ ଟଙ୍କା ପୁରସ୍କାର ମିଳିବ ।

ଧାରାଦତ୍ତର କଳ୍ପନା ଅନୁସାରେ ଦିନେ

ରଙ୍ଗନାଥ ତା' ଘରକୁ ଚୋରି କରିବାକୁ ଆସି ଧରା ପଡ଼ିଲା । ତା'ପରେ ଧାରାଦତ୍ତ ରଙ୍ଗନାଥକୁ କହିଲା, "ଆରେ, ଚୋରଶାସ୍ତ୍ରକୁ ଚୋରାଇବା ମାନେ ତୁ ଭାବିନେଲୁ ଯେ ମୋ ଘରେ ମଧ୍ୟ ଚୋରି କରିବାର ଯୋଗ୍ୟତା ଅସିଗଲା !"

"ଆପଣଙ୍କ ଚୋରଶାସ୍ତ୍ରରେ ବିଶ୍ୱାସ କରି ହିଁ ମୁଁ ଏପରି କରିଛି । ଯେଉଁ ଶାସ୍ତ୍ର ବର୍ତ୍ତମାନ ଅକାମୀ ବୋଲି ପ୍ରମାଣିତ ହେଲା, ତା'ର ଆଉ ଦରକାର କ'ଣ ?" ଏକଥା କହି ରଙ୍ଗନାଥ ଥଳିରୁ ଚୋରଶାସ୍ତ୍ରଟି ବାହାର କରି ଧାରାଦତ୍ତର ମୁହଁ ଉପରକୁ ଫୋପାଡ଼ି ଦେଲା ।

ଧାରାଦତ୍ତ ପ୍ରଥମେ ଭାବି ପାରିଲା ନାହିଁ ରଙ୍ଗନାଥ ସହିତ ସେ କିପରି ବ୍ୟବହାର କରିବ । ତାକୁ ରାଜାଙ୍କ ପାଖରେ ହାଜର କରାଇଲେ ଲକ୍ଷେ ଟଙ୍କା ମିଳିବ । କିନ୍ତୁ ଏପରି କଲେ ରଙ୍ଗନାଥ ତା'ର ସମସ୍ତ ରହସ୍ୟ ପଦାରେ ପକାଇବ । ତେଣୁ ସେ ରଙ୍ଗନାଥକୁ ବାତ୍ସଲ୍ୟପୂର୍ବକ କହିଲା, "ରଙ୍ଗନାଥ, ତୁ ଭୁଲ ବୁଝିଲୁ । ଠିକ୍ ଅଛି । ଏପରି ଭବିଷ୍ୟତରେ ଆଉ କରିବୁ ନାହିଁ । ବର୍ତ୍ତମାନ ପରିଶ୍ରମ କରି ଧନ ଉପାର୍ଜନ କରି ଜୀବନ ବିତାଇ ଦେ । ବର୍ତ୍ତମାନ ସୁଦ୍ଧା ତୁ ବହୁତ କିଛି ଧନ ପାଇ ସାରିଛୁ । ସେହି ଧନ ନେଇ କିଛି ବ୍ୟବସାୟ ଆରମ୍ଭ କର ।" ଏକଥା ବୁଝାଇ ଦେଇ ଧାରାଦତ୍ତ ତାକୁ ମୁକ୍ତ କଲା ।

କିନ୍ତୁ ରଙ୍ଗନାଥ ବାସ୍ତବରେ ତା' ପରାମର୍ଶ ଗ୍ରହଣ କରିବ ନା ଦିନେ ନା ଦିନେ ତା' ଘର ଲୁଣ୍ଠନ କରିବାକୁ ପୁଣି ଆସି ପହଞ୍ଚିବ, ଏକଥା ଭାବି ଧାରାଦତ୍ତ ଆଉ ଶାନ୍ତି ପାଇଲା ନାହିଁ । ସେ ବୁଝିଲା, ବୈଦ୍ୟଶାସ୍ତ୍ର ଯେପରି ଲୋକଙ୍କ ଉପକାର ପାଇଁ ଉଦ୍ଦିଷ୍ଟ, ଚୋର ଶାସ୍ତ୍ର ସେପରି ହୋଇ ପାରେନା । ତେଣୁ ସେ ନିଜ ବହିଟିକୁ ପୋଡ଼ିଦେଲା । ଶେଷ ଜୀବନ ଶାନ୍ତିରେ ବିତାଇବା ପାଇଁ ତୀର୍ଥରେ ଯାଇ ରହିଲା ।





# ସନ୍ଦେହର ଭୂତ

ଗୋଟିଏ ଗାଁରେ ଦୁର୍ଗାଦତ୍ତ ନାମକ ଏକ ବ୍ୟବସାୟୀ ଥିଲା । ସେ ଥିଲା ଯେମିତି କଞ୍ଜୁସ୍ ସେମିତି ଭୟାଳୁ । ତା'ର ପୂର୍ବପୁରୁଷଙ୍କ ଅମଳରୁ ଗୋଟିଏ ଘର ଓ ଘରପାଖରେ ବଗିଚା ଥିଲା । ଦୁର୍ଗାଦତ୍ତ ଭାବିଲା ସେହି ବଗିଚାରେ କିଛି ପରିବା ଚାଷ କରି ପଇସା ଅର୍ଜନ କରିବ । ଗୋଟିଏ ଚାକର ରଖିଲେ ସେ ବଗିଚା କାମ ଦେଖିବା ସଙ୍ଗେ ସଙ୍ଗେ ଘର ମଧ୍ୟ ଜଗିବ ।

ଦୁଇଟି କାମ ଏକାଠି କରିବା ପାଇଁ ସେ ନୀଳକଣ୍ଠ ନାମକ ଏକ ବ୍ୟକ୍ତିକୁ ନିଯୁକ୍ତ କଲା । ନୀଳକଣ୍ଠ ଥିଲା ବଗିଚା କାମରେ ଧୂରନ୍ଧର । କିନ୍ତୁ ଦୁର୍ଗାଦତ୍ତ ଭାବିଲା, ଦିନସାରା ବଗିଚା କାମ କରିବା ପରେ କ'ଣ ରାତିରେ ସେ ଭଲଭାବରେ ପହରା ଦେଉଥିବ ? ଏକଥା ପରୀକ୍ଷା କରି ଦେଖିବା ପାଇଁ ରାତିରେ ସେ ପଛ କବାଟ ଖୋଲି ବାହାରକୁ ଆସିଲା । କବାଟ ପୁରୁଣା ଥିବାରୁ କଟମଟ ଶବ୍ଦ ହେଲା ।

ଦୁଆର ପଟରେ ପହରା ଦେଉଥିବା ନୀଳକଣ୍ଠ ଶବ୍ଦ ଶୁଣି ହାତରେ ବାଡ଼ି ଧରି ଘର ପଛପଟକୁ ଛୁଟି ଆସିଲା ଓ ଦେଖିଲା ଜଣେ ବ୍ୟକ୍ତି ଚୋରେଇ ଘର ଆଡ଼େ ଯାଉଛି । ନୀଳକଣ୍ଠ ବାଡ଼ି ଉଠାଇ ମାରିବାକୁ ଉଦ୍ୟତ ହେଲା ।

ଠିକ୍ ସେତିକିବେଳେ ଦୁର୍ଗାଦତ୍ତ ମୁହଁ ବୁଲାଇ ପଛକୁ ଚାହିଁ ଚମକି ପଡ଼ିଲା । ନୀଳକଣ୍ଠ ମାଲିକକୁ ଚିହ୍ନିପାରି କହିଲା, "ମାଲିକେ, ଆପଣ ! ଅଧରାତିରେ ଆପଣ ଏଠାକୁ କାହିଁକି ଆସିଛନ୍ତି ?"

"ଆରେ ନୀଳକଣ୍ଠ, ତୁ ଠିକ୍‌ଭାବରେ ପହରା ଦେଉଛୁ ନା ନାହିଁ ଦେଖିବା ପାଇଁ ମୁଁ ଏଠାକୁ ଆସିଥିଲି । ତୁ ଭଲ ପହରା ଦେଉଛୁ । ମୁଁ

କୁମାର ବର୍ମା

ମଝିରେ ମଝିରେ ତୋତେ ଦେଖିବାକୁ ଆସି-ପାରେ । ତେଣୁ ତୁ ପିଟିବା ପୂର୍ବରୁ ପ୍ରଥମେ ଥରେ ଭଲକରି ଦେଖିନବୁ ।" ଏକଥା ବୁଝାଇ ଦେଇ ସେ ଘର ଭିତରକୁ ଚାଲିଗଲା । ଧରିନେଲା ଏପରି କହିବା ଦ୍ୱାରା ନୀଳକଣ୍ଠ ଅଧିକ ସାବଧାନତା ସହକାରେ କାମ କରିବ ।

କିନ୍ତୁ ଏସବୁ କଥା ଜଣେ ଚୋର ଶୁଣିନେଲା । ସେ ବହୁତ ଦିନରୁ ଦୁର୍ଗାଦତ୍ତ ଘର ଉପରେ ଆଖି ରଖିଥିଲା । ହେଲେ ନୀଳକଣ୍ଠ ଯୋଗୁଁ ସୁଯୋଗ ପାଉ ନ ଥିଲା । ଏଥର ତାକୁ ଅପୂର୍ବ ସୁଯୋଗ ମିଳିଗଲା । ତା'ର ଶରୀର ଗଠନ ବି ଥିଲା ଦୁର୍ଗାଦତ୍ତ ପରି ।

ପରଦିନ ରାତିରେ ସେ ଦୁର୍ଗାଦତ୍ତ ପରି ବେଶ ହୋଇ ଘରେ ପଶିଲା ଓ ଗୋପେଇ ଘରର ତାଲାକୁ ନକଲି ଚାବିରେ ଖୋଲିଲା ।

ପୂର୍ବ ରାତି ପରି ନୀଳକଣ୍ଠ ଶବ୍ଦ ଶୁଣି ଝପଟି ଆସିଲା; କିନ୍ତୁ ପଛପଟରୁ ଚୋରକୁ ଦେଖି ଦୁର୍ଗାଦତ୍ତ ବୋଲି ଭାବିଲା । ଏମିତି ସବୁଦିନେ ମାଲିକ ପରୀକ୍ଷା କରିବାଟା ତାକୁ ଭଲ ଲାଗିଲା ନାହିଁ । ମାଲିକକୁ କିଛି ଶିକ୍ଷା ଦେବାକୁ ହେବ । ତେଣୁ ଚୋର ଗୋପେଇ ଘରେ ପଶିବା ମାତ୍ରେ ସେ ବାହାରୁ ତାଲା ଲଗାଇ ଦେଲା ।

ତେଣେ ଚୋର ଗୋପେଇ ଘରେ ଥାଇ ଭାବିଲା ଯେ ସେ ଦୁର୍ଗାଦତ୍ତ ପରି ବେଶ ଧରି ଆସିଥିଲେ ମଧ୍ୟ ନୀଳକଣ୍ଠ ନିଶ୍ଚୟ ଚିହ୍ନି ପାରିଛୁ । ଯାହାହେଉ, ସେ ଗୋପେଇ ଘରର ସବୁ ଜିନିଷ



ବନ୍ଧାବନ୍ଧ କରି ପଳାଇବାକୁ ବାଟ ଖୋଜି ଆତୁର ହେଲା ।

ସେ ବୁଝି ପାରିଲା ବାହାର ପଟୁ ଶିକୁଳି ଦିଆ ଯାଇଛି । ଜିନିଷଟିକି ହାତରେ ଧରି ସେ ଗୋଟାଏ କରଚୂଲି ଧରି କବାଟ କଣରେ ଲୁଚି ରହିଲା । କିଛି ସମୟ ପରେ କେହି ଜଣେ କବାଟ ଖୋଲି ଭିତରେ ପଶିଲା । ଚୋର ତା' ମୁଣ୍ଡରେ ପାହାରେ କଷି ଦେଲା ଓ ତା'ର ହାତ ଗୋଡ଼ ବାନ୍ଧି ପକାଇ ଦେଇ ପଳାଇଗଲା ।

ସକାଳ ହେବାରୁ ନୀଳକଣ୍ଠ ରୋଷେଇ ଘର ଆଡ଼କୁ ଆସିଲା ଦେଖିଲା କବାଟ ଖୋଲା ପଡ଼ିଛି ଓ ଦୁର୍ଗାଦତ୍ତର ହାତଗୋଡ଼ ବନ୍ଧା ହୋଇଛି; ସବୁ ଜିନିଷ ଚୋରି ହୋଇ ଯାଇଛି ।

ନୀଳକଣ୍ଠ ତତ୍‌କ୍ଷଣାତ୍ ତାଙ୍କ ବନ୍ଧନ ଖୋଲି ଦେଲା ଓ ପଚାରିଲା, "ମାଲିକେ, ଏ କି କଥା ? ଆପଣଙ୍କୁ କିଏ ଏପରି ବାନ୍ଧିଛି ?"

ପଅର ଦିନ ରାତିରେ କବାଟ ଶବ୍ଦରେ ଭୁ ଆସିଗଲୁ । ଚୋର ସତର୍କ ହେଲେ ଭୁ ବୁଝି ପାରିବୁ କି ନାହିଁ ପରୀକ୍ଷା କରିବା ପାଇଁ ଆଜି କବାଟରେ ତେଲ ଦେଇ ବାହାରି ଆସିଲି । ରୋଷେଇ ଘର କବାଟର ତାଲା ଖୋଲା ହୋଇଥିଲା ଓ ଶିକୁଳି ଲଗାଥିଲା । ମୁଁ ଆଶ୍ଚର୍ଯ୍ୟ ହୋଇ ଭାବିଲି, କିଏ ଏପରି କରିପାରେ ? ଶିକୁଳି ଖୋଲି ଭିତରକୁ ପଶିଲି । ଆଗରୁ ହିଁ ଗୋଟାଏ ବଦମାସ ଚୋର ଭିତରେ ପଶିଥିଲା । ସେ ହଠାତ୍ ମୋ ଉପରେ ଆକ୍ରମଣ କରି



ମୋତେ ବାନ୍ଧି ପକାଇଲି । ରାତିରେ ଚୋର ଘରେ ପଶି ଚୋରି କରୁଥିଲା; ଆଉ ତୁ କ'ଣ କରୁଥିଲୁ ?" ଦୁର୍ଗାଦତ୍ତ ନୀଳକଣ୍ଠକୁ ଓଲଟି ପଚାରିଲା ।

ବର୍ତ୍ତମାନ ନୀଳକଣ୍ଠ ଜାଣି ପାରିଲା ଯେ ସେ ଯାହାକୁ ମାଲିକ ଭାବି ବନ୍ଦୀ କରିଥିଲା, ସେହିଁ ଚୋର । କିନ୍ତୁ ନିଜର ଭୁଲ୍‌ଟାକୁ ନ ଦେଖାଇ ସେ କହିଲା, "ଆପଣ କ'ଣ ଭାବୁଛନ୍ତି ଯେ ଘର ଭିତରେ ଚୋର ପଶିବା ବେଳେ ମୁଁ ଦେଖି-ନାହିଁ ? ତା'ର ଆସିବା ତାଲା ଖୋଲିବା ସବୁ ମୁଁ ଦେଖିଛି । ତେଣୁ ସେ ଭିତରେ ପଶିବା-ମାତ୍ରେହିଁ ମୁଁ ବାହାରୁ ଶିକୁଳି ଲଗାଇ ରଖି-ଥିଲି । ମୁଁ ଯେଉଁ ଚୋରକୁ ଧରିଥିଲି, ତାକୁ ଆପଣହିଁ ଛାଡ଼ି ଦେଇଛନ୍ତି । ଆଉ ମୋ ଉପରେ ଓଲଟା ଦୋଷାରୋପ କରୁଛନ୍ତି ! ଇଏ କି ପ୍ରକାର ନ୍ୟାୟ, ମାଲିକେ ?"

ଏକଥା ଶୁଣି ଦୁର୍ଗାଦତ୍ତର ମୁହଁ ଫିକା ପଡି-ଗଲା । ତା' ପରଠାରୁ ଆଉ କେବେ ସେ ନୀଳ-କଣ୍ଠକୁ ପରୀକ୍ଷା କରି ନାହିଁ !

ଅବଶ୍ୟ ସୌଭାଗ୍ୟର କଥା ଯେ କିଛି ଦିନ ପରେ ଆଉ ଦିନେ ରାତିରେ ସେ ଚୋରଟି ଦୁର୍ଗାଦତ୍ତ ଘରେ ପଶିଥିବା ବେଳେ ନୀଳକଣ୍ଠର କୌଶଳ ଓ ତତ୍ପରତା ଯୋଗୁଁ ଧରା ପଡ଼ିଲା । ନୀଳକଣ୍ଠ ତାକୁ କାବୁ କରି ସାରି ହୁରି ପକା-ଇଲା । ଦୁର୍ଗାଦତ୍ତ ତଥା ସାହି ପଡ଼ିଶାର ଲୋକ ଦୌଡ଼ି ଆସିଲେ । ଯଥାବିଧି ଚୋରକୁ ଗିରଫ କରାଗଲା । ତଦନ୍ତ ଫଳରେ ସେ ଲୁଚାଇ ରଖି-ଥିବା ସମସ୍ତ ଚୋରା ଜିନିଷ ଉଦ୍ଧାର ହୋଇ ପାରିଲା । ସେସବୁ ଭିତରେ ନୀଳକଣ୍ଠର ହୃତ ସମ୍ପତ୍ତି ମଧ୍ୟ ରହିଥିବାର ଦେଖାଗଲା । ଅନ୍ୟ ଗ୍ରାମବାସୀଙ୍କ ଘରୁ ଯାହା ଚୋରି ଯାଇଥିଲା, ସେସବୁରୁ ଅଧିକାଂଶ ଜିନିଷ ମିଳିଗଲା । ନୀଳ-କଣ୍ଠ ଭଳି ବିଶ୍ୱସ୍ତ ଓ ସାହସୀ ସହକାରୀ ମିଳିବା ଯେ କଷ୍ଟକର, ଏହା ଦୁର୍ଗାଦତ୍ତ ବୁଝି ପାରିଲା ।





# ନ୍ୟାୟଶୀଳ ରାଜା

ପ୍ରାଚୀନ କାଳରେ ବୈଶାଳୀ ନଗରରେ ଚନ୍ଦ୍ରସେନ ନାମରେ ଜଣେ ରାଜା ରାଜତ୍ୱ କରୁଥିଲେ । ସେ ଥିଲେ ଜଣେ ଧର୍ମାତ୍ମା ଓ ପ୍ରଜାବତ୍ସଳ ରାଜା । ତାଙ୍କ ଶାସନରେ କୌଣସି ଭେଦଭାବ ନ ଥିଲା ଏବଂ ସମସ୍ତେ ସମାନଭାବରେ ନ୍ୟାୟ ବିଚାର ପାଉଥିଲେ ।

ଦିନେ ଅନ୍ତଃପୁରର ଜଣେ ସେବକ ବିନୟପୂର୍ବକ ରାଜାଙ୍କ ପାଖରେ ଫେରାଦ ହେଲା, "ମହାରାଜ, ଦରବାର ସହିତ ସଂଶ୍ଳିଷ୍ଟ ଜଣେ ଯୁବକ ପ୍ରତିଦିନ ରାତିରେ ମୋ ଘରକୁ ଆସି ଧମକ ଦେଉଛି ଯେ ମୁଁ ଯେପରି ମୋ ଝିଅକୁ ତା' ସହିତ ବିଭା କରିଦିଏଁ, ନଚେତ୍ ସେ ମୋର ସମଗ୍ର ପରିବାରକୁ ବିନାଶ କରିବ । ଆପଣ ହିଁ ମୋତେ ଏହି ବିପଦରୁ ରକ୍ଷା କରି ପାରିବେ ।"

ରାଜା କହିଲେ, "ସେହି ଯୁବକ ଯଦି ପୁଣି ତୁମ ଘରେ ପହଞ୍ଚି ଧମକ ଦିଏ ତ ମୋତେ ଖବର ଦେବ । ମୁଁ ତୁମ ପ୍ରତି ନିଶ୍ଚୟ ନ୍ୟାୟ ବିଚାର କରିବ ।"

ପରଦିନ ସେବକଟି ଆସି ରାଜାଙ୍କୁ ଖବର ଦେଲା ଯେ ସେ ଯୁବକ ପୁଣି ଆସି ତାକୁ ଧମକ ଦେଉଛି ।

ସନ୍ଧ୍ୟା ବେଳକୁ ରାଜା ନିଜର ବେଶ ବଦଳାଇ ସେବକ ସହିତ ତା' ଘରେ ଯାଇ ପହଞ୍ଚିଲେ । କିଛି ସମୟ ପରେ ସେବକ ରାଜାଙ୍କୁ ଜଣାଇଲା ଯେ ଯୁବକ ବର୍ତ୍ତମାନହିଁ ଆସୁଛି । ରାଜା ଲୁଚି ଯାଇ ଦୀପଟି ଲିଭାଇ ଦେଲେ ।

ପରେ ଯୁବକଟି ଘର ଭିତରକୁ ଆସିଲା । ରାଜା ଅନ୍ଧାର ଭିତରେ ମଧ୍ୟ ଯୁବକଟିକୁ ତରବାରିରେ ମାରିଦେଲେ । ତା'ପରେ ରାଜା ସେବକକୁ ଦୀପ ଜଳାଇ ଆଣିବାକୁ କହିଲେ । ଦୀପ ଆଲୋକରେ ରାଜା ଯୁବକଟିକୁ ଦେଖି କହିଲେ, "ଭଗବାନ ! ତମେ ଖୁବ୍ କୃପାଳୁ ଓ ଦୟାଳୁ । ତୁମେ ମୋତେ ରକ୍ଷା କରିଛ ।"

ଗଣେଶ ଶର୍ମା

ତା'ପରେ ରାଜା ସେବକକୁ ପଚାରିଲେ, "ତୁମର ରୋଷେଇ ଘର କେଉଁଠି ?"

ଦୁଇ ଜଣ ଯେତେବେଳେ ରୋଷେଇ ଘରେ ପହଞ୍ଚିଲେ ରାଜା ସେବକକୁ ଖାଦ୍ୟ ପରସିବାକୁ କହିଲେ ଓ ଶିଘ୍ର ଖାଇଦେଇ ତୃପ୍ତି ପ୍ରକାଶ କଲେ ।

ରାଜାଙ୍କର ଏସବୁ କାର୍ଯ୍ୟର ଅର୍ଥ ସେବକ ବୁଝି ପାରିଲା ନାହିଁ । ତା'କୁ ସବୁ ଆଶ୍ଚର୍ଯ୍ୟ ଲାଗିଲା । ସେ ଫେରାଦ ହେବା ମାତ୍ରେ ସ୍ୱୟଂ ରାଜା ଆସିଲେ, ପୁଣି ଅନ୍ୟାୟୀ ଯୁବକକୁ ସେ ନିଜେହିଁ ମାରିଦେଲେ, ମାରିବା ପୂର୍ବରୁ ଦୀପ ଲିଭାଇ ଦେଲେ, ପୁଣି ଆଲୁଅରେ ମୃତ ଯୁବକକୁ ଦେଖି ଭଗବାନଙ୍କ ପାଖରେ କୃତଜ୍ଞତା ପ୍ରକାଶ କଲେ । ଅଧିକନ୍ତୁ ମାଗି ଖାଇଲେ ।

ଖାଇବା ଶେଷ କରି ହାତ ମୁହଁ ଧୋଇ ରାଜା ସେବକକୁ କହିଲେ, "ଦୁଇ ଦିନ ପୂର୍ବରୁ ତମେ ଯେତେବେଳେ ମୋତେ ସବୁ କଥା କହିଲ, ମୁଁ ଭାବିଲି କି ତମକୁ ଧମକ ଦେଉଥିବା ଯୁବକ ମୋ ପୁଅ ବିନା ଆଉ କେହି ନୁହେଁ । ମୋର ବିଶ୍ୱାସ ଥିଲା ଯେ ଅନ୍ୟ କୌଣସି ଲୋକ ଏତେ ସାହସ କରିବ ନାହିଁ । ସେ ଯିଏ ବି ହେଉ ତାକୁ କଷ୍ଟସୂ ଦଣ୍ଡ ମିଳିବା ଉଚିତ୍ । ମୁଁ ପ୍ରଥମେ ଦୀପ ଲିଭାଇ ଦେଇଥିଲି ଏଇଥି ପାଇଁ ଯେ କାଳେ ଯିଏ ମୋ ପୁତ୍ର ହୋଇଥିଲେ ମୁଁ ତାକୁ ମାରି ପାରନ୍ତି ନାହିଁ ! ତାକୁ ମାରିଦେବା ପରେ ଦୀପ ଆଣିବାକୁ କହିଲି । କାରଣ ସେ କିଏ ମୁଁ ଜାଣି-ବାକୁ ଚାହିଁଲି । ଦୀପାଲୋକରେ ଦେଖିଲି ଯେ ସେ ମୋ ପୁଅ ନୁହେଁ, ସେଥିପାଇଁ ମୁଁ ଭଗ-ବାନଙ୍କ ପାଖରେ କୃତଜ୍ଞତା ପ୍ରକାଶ କଲି । ଦ୍ୱିତୀୟ କଥା, ତୁମେ ଯେବେ ମୋ ପାଖରେ ଫେରାଦ ହେଲ ସେତେବେଳେ ତୁମ ସମସ୍ୟା ସମାଧାନ ନ ହେବା ପର୍ଯ୍ୟନ୍ତ ଖାଇବି ନାହିଁ ବୋଲି ପ୍ରତିଜ୍ଞା କରିଥିଲି । ଖୁବ୍ ଭୋକ ଲାଗୁଥିଲା । ତେଣୁ ତୁମ ଘରେ ଖାଇଲି ।"

ଏସବୁ କଥା ବୁଝେଇ ଦେଇ ରାଜା ନିଜ ପ୍ରାସାଦକୁ ଲେଉଟି ଆସିଲେ । ରାଜାଙ୍କର ନ୍ୟାୟ ପରାୟଣତା କଥା ଭାବି ସେବକର ଆଖିରୁ ଆନନ୍ଦାଶ୍ରୁ ଝରିବାକୁ ଲାଗିଲା ।





# ବୀର ହନୁମାନ

ବାନର କୁଳକୁ ଧ୍ୱଂସ କରି ଦେବାର ଆସ୍ଫାଳନ କରୁଥିବା ବଶମ୍ବୁ ଇତ୍ୟାଦି ରାକ୍ଷସଙ୍କୁ ବସିବାର ସଙ୍କେତ ଦେଇ ବିଭୀଷଣ କହିଲେ :

"ଆପଣମାନେ କହିଛନ୍ତି କି ଯଦି ସାମ, ଦାନ, ଭେଦ ଦ୍ୱାରା କୌଣସି କାର୍ଯ୍ୟ ସିଦ୍ଧି ନ ହେବ, ତେବେ ଯାଇ ଦଣ୍ଡର ଆଶ୍ରୟ ନିଆଯାଇପାରେ । ଆପଣମାନେ ରାମଚନ୍ଦ୍ରଙ୍କ ଶକ୍ତିକୁ ନ୍ୟୁନକରି ଦେଖୁଛନ୍ତି । ହନୁମାନ ଯେ ସମୁଦ୍ର ଲଙ୍ଘନ କରି ଏତେ ଦୂର ଆସି ସବୁ ଲଣ୍ଡଭଣ୍ଡ କରିଦେଇ ଗଲା, ସେଥିରୁ ସ୍ପଷ୍ଟ ହେଉଛି କି ଈଶ୍ୱର ତାଙ୍କ ପକ୍ଷରେ ଅଛନ୍ତି । କୁହାଯାଉଛି କି ରାମଚନ୍ଦ୍ର ଖର, ଦୂଷଣ ଇତ୍ୟାଦିଙ୍କୁ ବଧ କରିଥିବା ହେତୁ ରାବଣ ସୀତାଙ୍କୁ ନେଇ ଆସିଲେ । କିନ୍ତୁ ସେମାନେ ରାମଙ୍କୁ ମାରିବାକୁ ଗଲାରୁ ସିନା ରାମ ତାଙ୍କୁ ମାରିଲେ ! ଆତ୍ମରକ୍ଷା କଦାପି ଅପରାଧ ନୁହେଁ । ଆମେ ସୀତାଦେବୀଙ୍କୁ ଆଣି ବିପଦ ଡାକି ଆଣିଛୁ । ରାମଚନ୍ଦ୍ର ଲଙ୍କା ଆକ୍ରମଣ କରିବା ପୂର୍ବରୁ ସୀତାଦେବୀଙ୍କୁ ନେଇ ତାଙ୍କ ପାଖରେ ସମର୍ପି ଦେବା ହିଁ ଶ୍ରେୟସ୍କର । ମୁଁ ଯାହା କହୁଛି, ତାହା ଯଥାର୍ଥ । କ୍ରୋଧର ବଶୀଭୂତ ହୋଇ ଆମେ ସୁଖ ଓ ଧର୍ମରେ ଜଳାଞ୍ଜଳି ଦେଉଁ । ମୋ ପରାମର୍ଶ ଶୁଣିଲେ ଆମର ମଙ୍ଗଳ ହେବ ।"

ବିଭୀଷଣଙ୍କ ପରାମର୍ଶ ରାବଣକୁ ତୁଷ୍ଟ କଲା ନାହିଁ । ସେ କ୍ରୋଧାନ୍ୱିତ ହୋଇ କହିଲା, "ମୁଁ କାହାକୁ ଡରେନାହିଁ । ଇନ୍ଦ୍ରକୁ ସାଥିରେ ଧରି ଆସିଲେ ମଧ୍ୟ ରାମଚନ୍ଦ୍ର ମୋ ଆଗରେ ତିଷ୍ଠି



ଉଦ୍‌ଗ୍ରୀବ ହୋଇ ରହିଥାନ୍ତି । ରାବଣ ପ୍ରହସ୍ତ ଆଡ଼କୁ ଦୃଷ୍ଟିପାତ କରି କହିଲା, "ସେନାପତି ! ନଗରୀର ସୁରକ୍ଷା ନିମନ୍ତେ ଯୋଗ୍ୟ ଯୋଦ୍ଧା-ମାନଙ୍କୁ ନିଯୁକ୍ତ କର ।"

ପ୍ରହସ୍ତ ତତ୍‌କ୍ଷଣାତ୍ ନିଜ ସହକାରୀମାନଙ୍କୁ ଆବଶ୍ୟକୀୟ ନିର୍ଦ୍ଦେଶ ଦେଇସାରି ପଚାରିଲା, "ସମ୍ରାଟ ! ଆଉ କି ପ୍ରକାର ବ୍ୟବସ୍ଥା ଆପଣ ଚାହାନ୍ତି ?"

ରାବଣ ପ୍ରବୀଣ ରାକ୍ଷସମାନଙ୍କୁ ସମ୍ବୋଧନ କରି କହିଲା, "ଧର୍ମ, ଅର୍ଥ, କାମ ବିଷୟକ ଯେ କୌଣସି ସଙ୍କଟରୁ ଉତ୍ତୀର୍ଣ୍ଣ ହେବାର ଉପାୟ ନିର୍ଣ୍ଣୟ କରିବାରେ ଆପଣମାନେ ଧୁରନ୍ଧର । ଆପଣମାନଙ୍କ ସିଦ୍ଧାନ୍ତ ସର୍ବଦା ସୁଫଳ ଦେଇଛି । ମୁଁ ଯେଉଁକଥା କହିବାକୁ ଯାଉଛି, ତାହା କୁମ୍ଭ-କର୍ଣ୍ଣ ଛଡ଼ା ଆଉ କାହାରି ଅଜ୍ଞାତ ନୁହେଁ । ସେ ଛଅମାସ ଶୋଇ ସଦ୍ୟ ନିଦରୁ ଉଠିଛି ।"

"ମୁଁ ଦଣ୍ଡକାରଣ୍ୟରୁ ରାମଚନ୍ଦ୍ରଙ୍କ ସ୍ତ୍ରୀ ସୀତାଙ୍କୁ ଧରି ଆଣିଛି । ତାଙ୍କଭଳି ସୌନ୍ଦର୍ଯ୍ୟବତୀ ତିନି ଲୋକରେ ନାହାନ୍ତି । ମୁଁ ତାଙ୍କ ରୂପରେ ମୋହିତ । ସେ ମୋତେ ବର୍ଷେ ସମୟ ମାଗି-ଥିଲେ । ଆଜିଯାଏ ମୋ ବଶକୁ ଆସିଲେ ନାହିଁ । ସେ ବୋଧହୁଏ ଭାବୁଛନ୍ତି ମୁଁ ଦେଇଥିବା ବର୍ଷେ ସମୟ ଭିତରେ ରାମଚନ୍ଦ୍ର ଆସି ପହଞ୍ଚିବେ । କିନ୍ତୁ ସମୁଦ୍ର ଲଂଘି ରାମଚନ୍ଦ୍ର ଆସିବେ କିପରି ? ପାରିବେ ନାହିଁ ।"

ପରଦିନ ରାବଣ ସମରି ତନ୍ତ୍ର ସମ୍ପର୍କରେ ଆଲୋଚନା କରିବା ନିମନ୍ତେ ରତ୍ନଖଚିତ ସ୍ୱର୍ଣ୍ଣ-ରଥ ଚଢ଼ି ମନ୍ତ୍ରଣାଗୃହ ଅଭିମୁଖେ ଚାଲିଲା । ସେଠାରେ ପହଞ୍ଚି କର୍ମଚାରୀମାନଙ୍କୁ ପଠାଇ ନିଜର ସବୁ ମନ୍ତ୍ରୀମାନଙ୍କୁ ଡକାଇ ଆଣିଲା । ପ୍ରବୀଣ ରାକ୍ଷସମାନେ ଆସି ନିଜ ନିଜର ଆସନ ଗ୍ରହଣ କଲେ । ସେମାନଙ୍କ ଭିତରେ ଥିଲେ ବିଭୀଷଣ, ଶୁକ ଓ ପ୍ରହସ୍ତ । ସେମାନେ ରାବଣର ଆସନ ପାଖରେ ସ୍ଥାନ ଗ୍ରହଣ କଲେ ।

ସଭାରେ ନୀରବତା ବିରାଜମାନ କରୁଥାଏ । ରାବଣ କ'ଣ କହିବ ଶୁଣିବା ସକାଶେ ସମସ୍ତେ

ତେବେ ନିଶ୍ଚିନ୍ତ ରହିହେବ ନାହିଁ । ସେ ପହଞ୍ଚିଗଲେ ଆମେ କରିବା କ'ଣ ? ବାନରଟିଏ ଆସି ଅନେକ କାଣ୍ଡ କରିଦେଇ ଗଲା । ତେଣୁ ଆପଣମାନେ କର୍ତ୍ତବ୍ୟ ନିରୂପଣ କରନ୍ତୁ । ସମୁଦ୍ର ସେପଟେ ରାମ, ଲକ୍ଷ୍ମଣ ଓ ସୁଗ୍ରୀବ ବାନର ସେନା ସହ ପ୍ରସ୍ତୁତ ହୋଇ ରହିଛନ୍ତି । ମୁଁ ଯଦି ସୀତାଙ୍କୁ ରାମଙ୍କ ପାଖରେ, ସମର୍ପଣ କରି ନ ଦିଏ, ତେବେ ଆପଣମାନେ ରାମ, ଲକ୍ଷ୍ମଣଙ୍କୁ ବଧ କରି ପାରିବେ ତ ? ବାନରସେନା ସମୁଦ୍ର ଟପି ଆସି ପାରିବେ କି ? ଏ ସମସ୍ତ ପ୍ରଶ୍ନ ବିଚାର କରନ୍ତୁ ।"



ରାବଣର ଭୂମିକା ଶୁଣି କୁମ୍ଭକର୍ଣ୍ଣ ଉତ୍ତେଜିତ ହୋଇ କହିଲା, "ତୁମେ ବଳାତ୍କାରରେ ରାମଙ୍କ ସ୍ତ୍ରୀଙ୍କୁ ଆଣିବା ବେଳେ କାହାର ପରାମର୍ଶ ନେଇ-ଥିଲ କି ? ଏବେ କାହିଁକି ପରାମର୍ଶ ଲୋଡ଼ୁଛ ? ସେତେବେଳେ ଭାବିଲ ନାହିଁ ସୀତାକୁ ନେଇ ଆସିବାର ପରିଣତି କେଡ଼େ ଖରାପ ହୋଇ-ପାରେ । ଭାଗ୍ୟକୁ ଏ ଯାଏ ରାମଚନ୍ଦ୍ର ତୁମକୁ ବଧ କରିନାହାନ୍ତି । ସେ ଯାହା ହେଉ, ଏବେ ଆଉ ଡରନାହିଁ । ମୁଁ ତୁମର ସବୁ ଶତ୍ରୁଙ୍କୁ ନିପାତ କରିବି । ମୁଁ ଗଦା ଧରି ବାହାରିଲେ ଖୋଦ୍ ଇନ୍ଦ୍ର ବି ଛତ୍ରଭଙ୍ଗ ଦେବେ । ମୁଁ ରାମ, ଲକ୍ଷ୍ମଣଙ୍କୁ ମାରିଦେବି ଓ ବାନରମାନଙ୍କୁ ଭୋଜନ କରିବି । ନିଶ୍ଚିନ୍ତ ରୁହ ।"

କୁମ୍ଭକର୍ଣ୍ଣ ଯେଉଁ ପ୍ରଥମେ ଗାଳିଦେଲା, ସେଥିରେ ରାବଣ କୁପିତ ହୋଇ ବସିବାର ଦେଖି ମହାପାର୍ଶ୍ୱ କହିଲା, "ଆପଣ ସୀତାଦେବୀଙ୍କୁ ବଳାତ୍କାରରେ ଏଠାକୁ ନେଇ ଆସିପାରିଲେ, ଅଥଚ ବଳାତ୍କାର କରି ତାଙ୍କୁ ବିବାହ କରୁ-ନାହାନ୍ତି କାହିଁକି ? ଆପଣଙ୍କୁ ବାଧା ଦେବାକୁ ଅଛି କିଏ ? ପରିଣାମ କଥା ଚିନ୍ତାକରି ଆତଙ୍କିତ ହେବାର ଆବଶ୍ୟକତା ନାହିଁ । କୁମ୍ଭକର୍ଣ୍ଣ ଓ ଇନ୍ଦ୍ରଜିତ୍ ଥାଉଁ ଥାଉଁ ଆପଣଙ୍କର ହାନି କରି ପାରିବ କିଏ ?"

ମହାପାର୍ଶ୍ୱର ପରାମର୍ଶରେ ପ୍ରସନ୍ନ ହୋଇ ରାବଣ କହିଲା, "ମୁଁ ଯେ ସୀତାଙ୍କ ପ୍ରତି ବଳ ପ୍ରୟୋଗ କରିପାରୁନାହିଁ, ତା'ର କାରଣ ଅଛି ।



ଥରେ ବ୍ରହ୍ମଦେବଙ୍କ ପାଖକୁ ଯାଉଥିବା ପୁଞ୍ଜିକ-ସ୍ଥଳା ନାମକ ଅପ୍‌ସରା ଉପରେ ମୁଁ ବଳ ପ୍ରୟୋଗ କରିଥିଲି । ସେ ନିଶ୍ଚୟ ସେ କଥା ବ୍ରହ୍ମ-ଦେବଙ୍କୁ କହିଥିବ । ବ୍ରହ୍ମଦେବ ମୋତେ ଏଇ ଅଭିଶାପ ଦେଲେ ଯେ ଭବିଷ୍ୟତରେ ମୁଁ କୌଣସି ରମଣୀ ପ୍ରତି ବଳାତ୍କାର କଲେ ମୋ ମୁଣ୍ଡ ଛିଡ଼ି ପଡ଼ିବ । ସେଥିପାଇଁ ମୁଁ ନିଜକୁ ସମ୍ଭାଳି ରଖିଛି । ତେବେ ମୋର ଶକ୍ତିସାମର୍ଥ୍ୟ ବିଷୟ ନ ଜାଣି ରାମଚନ୍ଦ୍ର ମୋ ସହ ଯୁଝିବାକୁ ଆସୁଛନ୍ତି । ତାଙ୍କର ମୃତ୍ୟୁବେଳ ହେଲାଣି ।"

ଏସବୁ ଆଲୋଚନା ଶୁଣି ବିଭୀଷଣ କହିଲେ : "ରାକ୍ଷସରାଜ ! ଆପଣ କାହିଁକି ସୀତାଦେବୀଙ୍କ ପ୍ରତି ଆକୃଷ୍ଟ ହେଲେ ? ସେ ଏକ ମହାସର୍ପ ସଦୃଶ । ତାଙ୍କର କ୍ରୋଧ ରୂପକ ବିଷରେ ଆପଣଙ୍କର ପ୍ରାଣହାନି ହେବ । ଆପଣଙ୍କ ପାଇଁ ସେ ସାକ୍ଷାତ୍ ମୃତ୍ୟୁ । ମୋ କଥା ଶୁଣନ୍ତୁ । ବାନର ବାହିନୀଙ୍କ ଲଙ୍କା-ପ୍ରବେଶ ପୂର୍ବରୁ ହିଁ ଆପଣ ସୀତାଦେବୀଙ୍କୁ ନେଇ ଫେରାଇ ଦେଇ ଆସନ୍ତୁ । ଜାଣିରଖନ୍ତୁ, କୁମ୍ଭକର୍ଣ୍ଣ, ଇନ୍ଦ୍ରଜିତ୍, ମହାପାର୍ଶ୍ୱ ପ୍ରମୁଖ ବୀରମାନେ ରାମଙ୍କ ଆଗରେ ଠିଆ ହୋଇ ପାରିବେ ନାହିଁ । ରାମ ଆପଣଙ୍କୁ ନ ମାରି ଛାଡ଼ିବେ ନାହିଁ ।"

ବିଭୀଷଣଙ୍କ କଥାକୁ ଖଣ୍ଡନ କଲା ପ୍ରହସ୍ତ । ରାବଣକୁ କେହି ପରାଭୂତ କରିପାରିବ ନାହିଁ, ଏହାହିଁ ହେଲା ତା'ର ବକ୍ତବ୍ୟ । ଇନ୍ଦ୍ରଜିତ୍ ତାଚ୍ଛଲ୍ୟପୂର୍ଣ୍ଣ କଣ୍ଠରେ ବିଭୀଷଣଙ୍କୁ ଭୀରୁ ବୋଲି ଆଖ୍ୟା ଦେଲା ଓ କହିଲା, "ପୁଲସ୍ତ୍ୟ ବଂଶରେ ତୁମଭଳି କାପୁରୁଷ ଆଉ କେହି ଜନ୍ମି ନଥିଲେ । ଜଣେ ହିଁ ରାକ୍ଷସବୀର ରାମ, ଲକ୍ଷ୍ମଣ ଉଭୟଙ୍କୁ ବଧ କରିବାକୁ ଯଥେଷ୍ଟ । ମୁଁ ଇନ୍ଦ୍ରକୁ ପରାଜିତ କରି ଦେବଗଣଙ୍କୁ ସନ୍ତ୍ରସ୍ତ କରିଛି । ମୁଁ ପୁଣି ଛାର ମଣିଷକୁ ଡରିବି ?"

"ତୁମେ ଏବେ ମଧ୍ୟ ବାଳକ ମାତ୍ର ବତ୍ସ ! ଏସବୁ ବିଷୟରେ ପରାମର୍ଶ ଦେଲାଭଳି ଅଭିଜ୍ଞତା ତୁମେ ଆର୍ଜନ କରିନାହଁ । ତୁମେ ଯାହା କହୁଛ ସେଥିରେ ରାକ୍ଷସ କୂଳର ଅନିଷ୍ଟ ହିଁ ସାର ହେବ ।

ରାମଚନ୍ଦ୍ରଙ୍କୁ କେହି ହରାଇ ପାରିବେ ନାହିଁ । ସୀତାଙ୍କୁ ପ୍ରତ୍ୟର୍ପଣ କର—ଏହା ହିଁ ମୋର ପୁନର୍ବାର ପରାମର୍ଶ ।" ବିଭୀଷଣ ସ୍ପଷ୍ଟ ଭାବରେ କହିଲେ ।

ରାବଣର ଧୈର୍ଯ୍ୟଚ୍ୟୁତ ଘଟିଲା । ସେ ବିଭୀଷଣର ତୀବ୍ର ନିନ୍ଦା କରି କହିଲା, "ତୁମେ ମୋ ଭାଇ ବୋଲି ବର୍ତ୍ତିଗଲ । ଆଉ କେହି ଏପରି କଥା କହିଥିଲେ ତା' ମୁଣ୍ଡକାଟ ହୋଇଥାଆନ୍ତା ।"

ବିଭୀଷଣ ମଧ୍ୟ ଉତ୍ତେଜିତ ଭାବରେ କହିଲେ, "ଆପଣ ମୋ ଅଗ୍ରଜ । ବାପା ସମାନ । ଆପଣଙ୍କ ହିତ ପାଇଁ ମୁଁ ଯାହା କହୁଛି, ତାହା ଆପଣଙ୍କୁ ପିତା ଲାଗୁଛି । ଆପଣଙ୍କୁ ସୁହାଇଲା ଭଲ କଥା କହିବା ଲୋକଙ୍କର ଅଭାବ ନାହିଁ, ଜାଣେ । ମୁଁ ଅପ୍ରିୟ ସତ୍ୟ କହୁଛି । ତେଣୁ କ୍ଷମା କରନ୍ତୁ । ମୁଁ ଆପଣଙ୍କ ରାଜ୍ୟ ଛାଡ଼ି ବିଦା ହୋଇ ଯାଉଛି । ଆପଣ ସୁଖୀ ରହନ୍ତୁ । ଲଙ୍କାନଗରୀ ଓ ରାକ୍ଷସକୁଳକୁ ରକ୍ଷା କରନ୍ତୁ ।"



ଏହା କହି ବିଭୀଷଣ ତା'ର ଚାରିଜଣ ଅନୁଚର ଗହଣରେ ଆକାଶମାର୍ଗରେ ଗତି କରି ଶ୍ରୀରାମଙ୍କ ସମୀପରେ ଉପନୀତ ହେଲେ । ବାନରମାନେ ସେ ପାଞ୍ଚଜଣ ଆସୁଥିବାର ଦେଖି ପାରିଲେ । ସୁଗ୍ରୀବ ଭାବିଲେ ହୁଏତ ସେମାନେ ଆକ୍ରମଣ କରିବାକୁ ନଚେତ୍ ସମ୍ବାଦ ସଂଗ୍ରହ କରିବାକୁ ଆସୁଛନ୍ତି । ସେ ନିଜ ସନ୍ଦେହ ହନୁମାନ ଓ ଅନ୍ୟ କେତେକଙ୍କ ଆଗରେ ପ୍ରକାଶ କରନ୍ତେ ସେମାନେ ଡେଲା ପଥରମାନ ଧରି ଆଗନ୍ତୁକମାନଙ୍କୁ ମାରିଦେବାକୁ ପ୍ରସ୍ତୁତ ହୋଇ ସୁଗ୍ରୀବଙ୍କ ଅନୁମତି ମାଗିଲେ ।

ସେମାନେ ନିଜ କର୍ତ୍ତବ୍ୟ ନିରୂପଣ କରିପାରିବା ପୂର୍ବରୁ ବିଭୀଷଣ ତଥା ତାଙ୍କ ଅନୁଚର ଅନଳ, ଶରଭ, ସମ୍ପାତି ଓ ପ୍ରଧସ ନିକଟତର ହେଲେ । ସମୁଦ୍ର କୂଳରେ ଅବତରଣ କରୁଁ କରୁଁ ବିଭୀଷଣ ଆକାଶପଥରୁ ବାନରମାନଙ୍କୁ ଉଦ୍ଦେଶ୍ୟ କରି କହିଲେ, "ମୁଁ ବିଭୀଷଣ । ଦୁଷ୍ଟ ରାକ୍ଷସରାଜା ରାବଣର ଅନୁଜ । ଜଟାୟୁକୁ ବଧ କରି ରାବଣ




ମାୟାବୀ । ସେମାନଙ୍କ ଉପରେ ହଠାତ୍ ବିଶ୍ୱାସ ରଖାଯାଇ ପାରେନା । ବିଭୀଷଣ ରାବଣ ପ୍ରେରିତ ଗୁପ୍ତଚର ହୋଇଥିବା ଅସମ୍ଭବ ନୁହେଁ । ଆମ ଭିତରେ ରନ୍ଧ୍ର ଭେଦ ସୃଷ୍ଟି କରିବାକୁ ବା ବେଳ ଉଣ୍ଡି ଆମକୁ ମାରିଦେବାକୁ ଅଭିପ୍ରେତ ହୋଇ-ଥାଇପାରେ । ଖୋଦ୍ ରାବଣର ଭାଇକୁ ପରତେ ଯିବା କପରି ? ମୋର ମନେ ହୁଏ ଏ ପାଞ୍ଚ ରାକ୍ଷସଙ୍କୁ ମାରିଦେବା ହିଁ ଉଚିତ ହେବ ।"

ସୁଗ୍ରୀବଙ୍କ କଥା ଶୁଣିସାରି ରାମ ପାଖରେ ଥିବା ହନୁମାନ ଇତ୍ୟାଦିଙ୍କୁ ଚାହିଁ ପଚାରିଲେ, "ସୁଗ୍ରୀବଙ୍କ କଥା ତ ଶୁଣିଲ । ତୁମମାନଙ୍କ ବିଚାର କ'ଣ ଏଥର କୁହ ।"

ଅଙ୍ଗଦ ତତ୍‌କ୍ଷଣାତ୍ କହିଲେ, "ଯାହା ହେଉ ନା କାହିଁକି, ଶତ୍ରୁପକ୍ଷର ଲୋକଙ୍କ ଉପରେ ବିଶ୍ୱାସ ଅନୁଚିତ୍ । ସେଥିରେ ଆମର ବହୁତ ବିପଦ ହୋଇପାରେ । ଆମ ନିରାପତ୍ତା ବଡ଼ କଥା ।" ଏସବୁ କ୍ଷେତ୍ରରେ ସାମାନ୍ୟ ହେଳା ବା ଶିଥିଳତା ସମୟକ୍ରମେ ଆମର ଚୂଡ଼ାନ୍ତ ବିପଦର ହେତୁ ହୋଇପାରେ । ତେଣୁ ଆମେ ମନରେ କୌଣସି ଦ୍ୱନ୍ଦ୍ୱ ନ ରଖି ଯେଉଁଠି ପ୍ରମାଦର ସମ୍ଭାବନା ରହିଛି, ତାହାକୁ ଉତ୍ପାଟିତ କରିଦେବା ଉଚିତ୍ ।"

"ଏ ଆଗନ୍ତୁକମାନଙ୍କ ଭିତରେ ଆମେ ଜଣେ ଗୁପ୍ତଚର ଗୁଡ଼ିଦେବା ।" କହିଲେ ଶରଭ ।

"ହଠାତ୍ ରାବଣଠାରୁ ବିଚ୍ଛିନ୍ନ ହୋଇ ଦଳେ

ସୀତାଦେବୀଙ୍କୁ ଧରି ନେଇଗଲା । ରାକ୍ଷସମାନଙ୍କ ପ୍ରହରାରେ ସୀତାଦେବୀ ଦୁଃଖରେ ଅଛନ୍ତି । ତାଙ୍କୁ ଶ୍ରୀରାମଚନ୍ଦ୍ରଙ୍କୁ ପୁଣି ସମର୍ପି ଦେବାପାଇଁ ମୁଁ ରାବଣକୁ ବହୁତ ପ୍ରବର୍ତ୍ତାଇଲି । କିନ୍ତୁ ତା' କପାଳରେ ଦୁର୍ଭୋଗ ଅଛି । ତେଣୁ ମୋ ପରାମର୍ଶ ତାକୁ ଭଲ ଲାଗିଲା ନାହିଁ । ଓଲଟା ମୋର ନିନ୍ଦା ଅପମାନ କଲା । ଅଗତ୍ୟା ମୁଁ ମୋ ପରି-ବାର ତ୍ୟାଗ କରି ଶ୍ରୀରାମଚନ୍ଦ୍ରଙ୍କ ପାଖରେ ଶରଣ ନେଉଛି ।"

ସୁଗ୍ରୀବ ରାମଙ୍କୁ କହିଲେ, "ରାବଣର ଅନୁଜ ଚାରି ଅନୁଚରଙ୍କୁ ଧରି ଆପଣଙ୍କ ଶରଣ ଚାହୁଁଛି । ଆପଣ ସାବଧାନ ରୁହନ୍ତୁ । ରାକ୍ଷସ ମାନେ

ରାକ୍ଷସ ଆମ ପାଖକୁ ଚାଲିଆସିବା ଭିତରେ କୌଣସି ଯୁକ୍ତି ନାହିଁ । ତେଣୁ ଏମାନଙ୍କୁ ସନ୍ଦେହ କରିବାକୁ ହିଁ ପଡ଼ିବ ।" ଜାମ୍ବବାନ କହିଲେ ।

"ଆମର ଜଣେ ଦୂତ ଯାଇ ବିଭୀଷଣଙ୍କ ସହ କଥାବାର୍ତ୍ତା କରନ୍ତୁ । ତାଙ୍କ ପ୍ରକୃତ ମନୋଭାବ ଜଣାପଡ଼ିବା ପରେ ଆମେ ଆମ କର୍ତ୍ତବ୍ୟ ନିରୂପଣ କରିବା ।" ମୈନ୍ଦ କହିଲେ ।

ହନୁମାନ କହିଲେ, "ବିଭୀଷଣଙ୍କୁ ପ୍ରଥମେ ପରୀକ୍ଷା କରି ତା'ପରେ ତାଙ୍କୁ ଆଶ୍ରୟ ଦେବା-କଥା ଯେ ସମସ୍ତେ କହୁଛନ୍ତି, ତାହା ମୋର ପସନ୍ଦ ହେଉନାହିଁ । ତାଙ୍କୁ ଆଶ୍ରୟ ଦେବା ପରେ ଯାଇ ସିନା ତାଙ୍କ ବାସ୍ତବ ମନୋଭାବ ଜଣା ପଡ଼ିବ ! ତାଙ୍କ ପାଖକୁ ଦୂତ ବା ପେଶିବେ କିପରି ? ଯିଏ ଦୂରରେ ଥାଏ ତା' ପାଖକୁ ସିନା ଦୂତ ପଠାଯାଇପାରେ ! ସମୟ ଓ ପରିସ୍ଥିତି ରୂପରେ ବିଭୀଷଣ ଆମ ପାଖକୁ ଆସିଛନ୍ତି । ଶ୍ରୀରାମଚନ୍ଦ୍ରଙ୍କ ସପକ୍ଷରେ କହି ରାବଣର ବିରାଗ-ଭାଜନ ହୋଇ, ଅପମାନ ପାଇ ସେ ଶରଣ ପ୍ରାର୍ଥନା କରି ଆମଠିଁ ପହଞ୍ଚିଛନ୍ତି । ମୈନ୍ଦ କହିବା ଅନୁସାରେ ବିଭୀଷଣଙ୍କ ପାଖକୁ ଯାଇ ରାବଣ ସମ୍ପର୍କରେ ପ୍ରଶ୍ନ କଲେ ସେ ଆଉ ଅଧିକା କ'ଣ କହିବେ ? ସେ ତ ନିଜ ଆଗମନର ହେତୁ ବ୍ୟକ୍ତ କରି ସାରିଛନ୍ତି । ଆଗନ୍ତୁକମାନେ ଅନିଷ୍ଟ-କାରୀ ଭଳି ଦିଶୁନାହାନ୍ତି । ମୋର ମନେହୁଏ, ଆପଣ ଯେପରି ବାଲିଙ୍କୁ ବଧ କରି ସୁଗ୍ରୀବଙ୍କୁ ରାଜ୍ୟ ଦେଲେ, ସେହିପରି ରାବଣକୁ ବଧ କରି ବିଭୀଷଣଙ୍କୁ ରାଜ୍ୟ ଦେବେ— ହୁଏତ ସେଇକଥା ତାଙ୍କ ମନରେ ଅଛି । ମୋର ବକ୍ତବ୍ୟ, ଆପଣ ବିଭୀଷଣଙ୍କୁ ଶରଣ ଦିଅନ୍ତୁ । ତେବେ ଆପଣଙ୍କର ଯାହା ଇଚ୍ଛା !"

ହନୁମାନଙ୍କ ଯୁକ୍ତିପୂର୍ଣ୍ଣ ପରାମର୍ଶ ଶୁଣି ବାନର ବୀରମାନେ ନୀରବ ରହିଲେ । ଆଗନ୍ତୁକ ଆଶ୍ରୟ-ପ୍ରାର୍ଥୀଗଣ ବିନମ୍ରଭାବରେ ସେହିପରି ଶୂନ୍ୟରେ ଶ୍ରୀରାମଚନ୍ଦ୍ରଙ୍କ ଆଦେଶକୁ ଅପେକ୍ଷା କରିଥାନ୍ତି ।





# ଅମର ବାଣୀ

ମନ୍ତ୍ରୀଭର୍ହିତସଂଯୁକ୍ତୈଃ ସମର୍ଥଃ ମନ୍ତ୍ର ନିର୍ଣ୍ଣୟେ
ମିତ୍ରୈର୍ୟାପି ସମାନାର୍ଥୈଃ ବାନ୍ଧବୈରପି ବା ହିତୈଃ ।
ସହିତୋ ମନ୍ତ୍ରୟିତ୍ୱା ଯଃ କର୍ମାରମ୍ଭାନ୍ ପ୍ରବର୍ତ୍ତୟେତ୍
ଦୈବେ ଚ. କୁରୁତେ ଯତ୍ନମ୍ ତମାହୁଃ ପୁରୁଷୋତ୍ତମମ୍ ॥ ॥ ୧ ॥

[ଯେଉଁ ବ୍ୟକ୍ତି କିଛି କାମ କରିବାକୁ ଗଲାବେଳେ ନିଜ ହିତୈଷୀ, ଯୋଗ୍ୟ ମନ୍ତ୍ରଣାଦାତା, ମିତ୍ର ଓ ସମ୍ବନ୍ଧିମାନଙ୍କ ସହ ପରାମର୍ଶ କରେ, ଓ ଭଗବାନଙ୍କ ଉପରେ ଭରସା ରଖେ, ତାଙ୍କୁ ଜଣେ ଉତ୍ତମ ବ୍ୟକ୍ତି ବୋଲି କହିବାକୁ ହେବ ।]

ଏକୋର୍ଥମ ଝମୃଶୋଦେକୋ ଧର୍ମେ ପ୍ରକୁରୁତେ ମନଃ ।
ଏକଃ କାର୍ଯ୍ୟାଣି କୁରୁତେ ତମାହୁଃ ମଧ୍ୟମଂ ନରମ୍ ॥ ॥ ୨ ॥

[ଯିଏ ଏକୁଟିଆ ଲକ୍ଷ୍ୟକୁ ଆଖି ଆଗରେ ରଖି କର୍ମ ନିରତ ହୁଏ, ସେ ମଧ୍ୟମ ଧରଣର ଲୋକ ।]

ଗୁଣଦୋଷାବନିଶ୍ଚିତ୍ୟ ତ୍ୟକ୍ତ୍ୱାଦୈବବ୍ୟପାଶ୍ରୟମ୍ ।
କରିଷ୍ୟାମୀତି ଯଃ କାର୍ଯ୍ୟମୁପେକ୍ଷେତ୍ ସ ନରାଧମଃ ॥ ॥ ୩ ॥

[ଯିଏ ଭଲ ମନ୍ଦ ସ୍ପଷ୍ଟ ବିଚାର ନ କରି ଭଗବାନଙ୍କ ସହାୟତା ନ ଲୋଡ଼ି କାର୍ଯ୍ୟ ଆରମ୍ଭ କରେ ମଝିରେ ଛାଡ଼ି ଦିଏ, ସେ ଅଧମ ।]

କାର୍ଯ୍ୟାରମ୍ଭ

Photo by K. P. A. Swamy



ଫଟୋ
ପରିଚୟ

ଲଢ଼େଇ କରିବା ପାଇଁ ହାତୀ କାହିଁ ଲୋଡ଼ା

ପୁରସ୍କାରପ୍ରାପ୍ତ :
ମିନତୀ ଦାସ

Photo by Mohan D. Desai



ବ୍ରହ୍ମପୁର
ଗଞ୍ଜାମ

ପାଚରି ଉପରେ ଯେବେ ହୋଇପାର ଛିଡ଼ା

ଛବି
ପରିଚୟ

# ଫଟୋ-ପରିଚୟ-ପ୍ରତିଯୋଗିତା: ପୁରସ୍କାର ଟ. ୨୦







* ପରିଚୟୋକ୍ତି ଜୁନ୍ ୧୫ ତାରିଖ ଭିତରେ ପୋଷ୍ଟକାର୍ଡ଼ରେ ଲେଖି ପଠାଇବା ଆବଶ୍ୟକ ।

* ପରିଚୟୋକ୍ତି ଦୁଇ ତିନି ପଦରେ ଲେଖାଯିବ ଏବଂ ପରସ୍ପର ସମ୍ବନ୍ଧ ରହିବ । ପୁରସ୍କାର ପ୍ରାପ୍ତ ପରିଚୟୋକ୍ତି ଅଗଷ୍ଟ ସଂଖ୍ୟାରେ ପ୍ରକାଶ ପାଇବ ।

# ଜହ୍ନମାମୁଁ

## ଏ ସଂଖ୍ୟାର କଥା-କାହାଣୀ-ହାସ୍ୟ-ବ୍ୟଙ୍ଗ

# ଏକମାତ୍ର ଓଡୋମସ
# ମଶା କାମୁଡ଼ାରୁ ଆପଣଙ୍କୁ
# ନିଶ୍ଚିତଭାବେ
# ୨-ଭାବରେ ସୁରକ୍ଷା ଦିଏ

## ରାତିରେ ଆରାମରେ ଭଲରେ ଆପଣ ଶୋଇପାରନ୍ତି।

ଓଡୋମସ ଆପଣଙ୍କୁ ସୁରକ୍ଷିତ ରଖେ ଯାହାକି ଅନ୍ୟ କୌଣସି ମଶା ନିବାରକ କରିପାରେନା :



ଏହାର ବାସ୍ନାରେ ମଶାସବୁ ଦୂରରେ ରହନ୍ତି



ଏହାର ଅପୂର୍ବ ଉପାଦାନ ମଶା ବଳୁଡରେ ଆପଣଙ୍କ ତ୍ୱକ୍‌କୁ ସୁରକ୍ଷିତ ରଖେ-ବଡ ସାଦା।

ତେଣୁ ଓଡୋମସ ଯେ ଆଜି ଭାରତରେ ସର୍ବାଧିକ ଭାବେ ବିକ୍ରି ହେଉଥିବା ମଶା ନିବାରକ ଏଥିରେ କୌଣସି ସନ୍ଦେହ ନାହିଁ।

## ପାଖରେ ରଖନ୍ତୁ
# ଓଡୋମସ
ମଶା ଆପଣଙ୍କ ପାଖକୁ ଆସିବା ପୂର୍ବରୁ







ବଲସାରା
ଉନ୍ନତ ଜୀବନ ଯାପନ ପାଇଁ
ଆଧୁନିକ ସାଧନ

BALSARA

CHAITRA-BLS-86 ORI

# ଟିନୋପାଲ୍*ର ନୂଆ ନାମ

# ରାନୀପାଲ୍+



ସୂତୀ ବସ୍ତ୍ର ପାଇଁ
ରାନୀପାଲ୍+




ସିନ୍ଥେଟିକ ଓ
ବ୍ଲେଣ୍ଡ୍ ବସ୍ତ୍ର ପାଇଁ
ରାନୀପାଲ୍+-ଏସ




**ସେହି ଜିନିଷ ସେହି କାମ, ଏବେ କିନ୍ତୁ ନୂଆ ନାମ**

## ସର୍ବୋତ୍ତମ ଶୁଭ୍ରତା ପାଇଁ- ରାନୀପାଲ୍+

**Suhrid Geigy LIMITED**

+ ସୁହୃଦ ଗାଇଗି ଲିମିଟେଡ ର ଟ୍ରେଡ ମାର୍କ

* ସୁହୃଦ ସିବା-ଗାଇଗୀ ଲିମିଟେଡ ଠାରୁ ପ୍ରାପ୍ତ ଲାଇସେନ୍ସ ଅଧୀନରେ ବିକ୍ରୀ କରାଯାଉଥିଲା ।

Shilpi SGT 6A/76 ori

# A DECADE OF ACHIEVEMENT

**agriculture**

New agricultural strategy evolved during the decade has ushered in the Green Revolution.
Command Area Programme around major irrigation projects has augmented irrigation facilities.

**industry**

Licensing procedures have been liberalised and simplified.
Self-reliance has been achieved in many fields.

Raw materials are more easily available.
Small Industries have received greater encouragement.

**communications**

Rail and Road transport have improved.
There is a better network of roads.
Post and Telegraph facilities have been expanded.
Telephone connections have multiplied.

**social services**

Integrated medical and health services have been introduced with accent on rural health.
There are more doctors, nurses and hospital beds.
Education has been made free upto higher secondary level in many States.

Special promotional projects have been launched for women and youth welfare.

**the infrastructure has been strengthened and economy stabilised.**



**it has been a performance-packed decade.**

